# ରାଇବଣିଆରେ ସ୍ୱାଧୀନତା ସଂଗ୍ରାମ

# RAIBANIARE SWADHINATA SANGRAM

ଲେଖକ :

ଡଃ ଶ୍ରୀକାନ୍ତ ଚରଣ ପାତ୍ର

ସାː / ପୋː-ଚମାରଗାଁ ।

ଜିଲ୍ଲା-ବାଲେଶ୍ୱର, ୭୫୬୦୩୨

*Written by :*

**Dr. Srikanta Ch. Patra**

At/P.O.-Chamargan

Via-Jaleswar

Dt.-Balasore, 756032

ପ୍ରକାଶିକା :

ଶ୍ରୀମତୀ ଚଞ୍ଚଳାମଣି ପାତ୍ର

ଶ୍ରୀ ପ୍ରକାଶନୀ

ଚମାରଗାଁ ।

ବାଲେଶ୍ୱର, ୭୫୬୦୩୨

*Published by :*

**Chanchala Mani Patra**

**SRI PRAKASHANI**

Chamargan

Balasore, 756032

ପ୍ରଚ୍ଛଦପଟ ଶିଳ୍ପୀ :

ତାପସ ପଣ୍ଡା ।

*Cover design :*

**Tapas Panda**

ମୁଦ୍ରଣ :

ଅମ୍ବିକା ପ୍ରେସ

ଜଳେଶ୍ୱର-୭୫୬୦୩୨

ବାଲେଶ୍ୱର

*Printed at :*

**AMBIKA PRESS**

Jaleswar-756032

Balasore

ପ୍ରଥମ ପ୍ରକାଶ :

ଅଗଷ୍ଟ କ୍ରାନ୍ତି ଦିବସ

ତା ୯ । ୮ । ୧୯୯୮ ଖ୍ରୀ

ମୂଲ୍ୟ-୨୭ ଟଙ୍କା

*First Edition:*

**August Kranti Dibas**

**9. 8. 1998**

*Price :*

**Rs. 27-00**

# ଉତ୍ସର୍ଗ

ଯେଉଁ

ସ୍ୱାଧୀନତା

ସଂଗ୍ରାମୀ ମାନଙ୍କର

ଲୁହ, ଲହୁ ଓ ଚରମ ତ୍ୟାଗର

ବିନିମୟରେ ଶହ ଶହ ବର୍ଷର

ପରାଧୀନତାର ଶୃଙ୍ଖଳରୁ ଭାରତ ଜନନୀ ମୁକ୍ତି

ଲାଭ କଲେ, ସେମାନଙ୍କର ପବିତ୍ର ସ୍ମୃତି

ଉଦ୍ଦେଶ୍ୟରେ "ରାଇବଣିଆରେ

ସ୍ୱାଧୀନତା ସଂଗ୍ରାମ"

ଶୀର୍ଷକ ପୁସ୍ତକଟି

ଅର୍ପଣ

କଲି ।

—ଲେଖକ

# ନିଜ କଥା

ମହାତ୍ମା ଗାନ୍ଧୀଙ୍କ ପରିଚାଳିତ ସ୍ୱାଧୀନତା ଆନ୍ଦୋଳନ ସମୟରେ ଅବିଭକ୍ତ ଜଳେଶ୍ୱର ଥାନାରେ ଚମାରଗାଁ ଗ୍ରାମ ଏକ ମୁଖ୍ୟ କେନ୍ଦ୍ର ଭାବରେ କାର୍ଯ୍ୟ କରୁଥିଲା । ଏହି ଗ୍ରାମର ସଂଗ୍ରାମୀ ଯୁବକ କୃଷ୍ଣ ପ୍ରସାଦ ଜେନା ପ୍ରଥମେ ଡ଼ଃ ହରେକୃଷ୍ଣ ମହତାବଙ୍କୁ ଏ ଅଞ୍ଚଳକୁ ଆଣି ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିଥିଲେ । ପୂର୍ବରୁ ମୋର ବାପା ସ୍ୱର୍ଗତଃ ତ୍ରିଲୋଚନ ପାତ୍ର, ନିଜ ଗାଁ ତଥା ନିକଟବର୍ତ୍ତୀ ଗାଁର ଲୋକଙ୍କଠାରୁ ଆନ୍ଦୋଳନ ସମୟର ଅନେକ ଉଲ୍ଲେଖଯୋଗ୍ୟ ଘଟଣା ସମ୍ପର୍କରେ ଶୁଣିଥିଲି । ସତ୍ୟେନ୍ଦ୍ର ନାଥ ଡ଼ଗର ମୋତେ କୃଷକ ଆନ୍ଦୋଳନର ପୃଷ୍ଠଭୂମି ଓ ତାହାର ଫଳାଫଳ ସମ୍ବନ୍ଧରେ ବିଶଦ୍ ଭାବରେ ଶୁଣାଇଥିଲେ । ଜମିଦାରମାନଙ୍କର ଅତ୍ୟାଚାର ଓ ସେମାନଙ୍କର ଜମିଜମା ବ୍ୟବସ୍ଥା ସମ୍ପର୍କରେ ମୋର କାକା ଶ୍ରୀଯୁକ୍ତ ଗଜେନ୍ଦ୍ର ନାଥ ପାତ୍ର ମୋତେ ସବିଶେଷ ତଥ୍ୟ ପ୍ରଦାନ କରିଥିଲେ । ଏସବୁ ଦ୍ୱାରା ଅନୁପ୍ରାଣିତ ହୋଇ ରାଇବଣିଆ ଅଞ୍ଚଳରେ ସଂଗଠିତ ହୋଇଥିବା ସ୍ୱାଧୀନତା ଆନ୍ଦୋଳନର ଏକ ଇତିହାସ ରଚନା କରିବା ପାଇଁ ଯତ୍ନଶୀଳ ହେଲି । ମାତ୍ର ଜରାଗ୍ରସ୍ତ ଶ୍ରୀ ଗୋବିନ୍ଦ ଚନ୍ଦ୍ର ଗିରି ଓ ଶ୍ରୀ ଶିରିଷ ଚନ୍ଦ୍ର ଦେଙ୍କ ବ୍ୟତୀତ ଅନ୍ୟ କୌଣସି ସଂଗ୍ରାମୀ ଏବେ ଜୀବିତ ନାହାନ୍ତି । ତେଣୁ ତଥ୍ୟ ସଂଗ୍ରହରେ ନାନାବିଧ ଅସୁବିଧାର ସମ୍ମୁଖୀନ ହୋଇଛି । ବିଭିନ୍ନ ଗାଁକୁ ଯାଇ ସଂଗ୍ରାମୀମାନଙ୍କର ପରିବାରର ଜୀବିତ ଲୋକ, ଏ ଅଞ୍ଚଳର ବୟସ୍କ ତଥା ସଚେତନ ଜନ ସାଧାରଣ ତଥା ରାଜ୍ୟ ସ୍ୱୀକୃତ ଜୀବିତ ସଂଗ୍ରାମୀମାନଙ୍କ ଠାରୁ ବିବରଣୀ ମାନ ସଂଗ୍ରହ କରିଛି । ତଥାପି ଅନେକ ତଥ୍ୟ ଅଜଣା ରହି ଯାଇଥିବାର ଅନୁମାନ କରୁଛି । ଏହି ଲୁପ୍ତ ପ୍ରାୟ ଇତିହାସ ସମ୍ପର୍କରେ ଯଦି କୌଣସି

ସହୃଦୟ ବ୍ୟକ୍ତିଙ୍କ ପାଖରେ ଅଧିକ ତଥ୍ୟ ଥାଏ, ଦୟାକରି ମୋତେ ଜଣାଇଲେ ମୁଁ ତାହାକୁ ଆଗାମୀ ସଂସ୍କରଣରେ ସନ୍ନିବେଶିତ କରି ପାରିବି ।

ଦେଶରେ ସଶସ୍ତ୍ର ଓ ଅହିଂସ ଏଇଭଳି ଦୁଇ ପ୍ରକାରର ମୁକ୍ତି ସଂଗ୍ରାମ ଚାଲିଥିଲା । ବିଶେଷତଃ ବଙ୍ଗ ପ୍ରଦେଶରେ ହିଂସାତ୍ମକ କାର୍ଯ୍ୟକ୍ରମ ଚାଲୁ ରହିଥିଲେ ମଧ୍ୟ ଗଇବଣିଆ ଅଞ୍ଚଳରେ ତାହାର କୌଣସି ପ୍ରଭାବ ପଡ଼ି ନଥିଲା । ଏଠାରେ କେବଳ ଗାନ୍ଧିଜୀଙ୍କର ପ୍ରଦର୍ଶିତ ମାର୍ଗରେ ହିଁ ଅହିଂସା ଆନ୍ଦୋଳନ ଚାଲିଥିଲା ।

ଏ ପୁସ୍ତିକାର ପାଣ୍ଡୁଲିପିଟିକୁ ଆମୂଳ ଚୂଳ ପଢ଼ି କେତେକ ସ୍ଥଳରେ ସଂଶୋଧନ ପାଇଁ ଆବଶ୍ୟକ ପରାମର୍ଶ ଦେଇଥିବାରୁ ଏବଂ ପୁସ୍ତକ ସଂପର୍କରେ ନିଜସ୍ୱ ଅଭିମତ ପ୍ରକାଶ କରିଥିବାରୁ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଭୋଗରାଇର ପୂର୍ବତନ ବିଧାୟକ ମାନନୀୟ ଦୁର୍ଗାଦାସଙ୍କୁ ତଥା ମୋର ଗୁରୁଦେବ ଓ ଉତ୍କଳ ବିଶ୍ୱ ବିଦ୍ୟାଳୟର ଇତିହାସ ବିଭାଗର ଅବସର ପ୍ରାପ୍ତ ଅଧ୍ୟାପକ ଡଃ ଜଗନ୍ନାଥ ପଟ୍ଟନାୟକଙ୍କୁ ମୁଁ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

ଏ ପୁସ୍ତକର ରଚନା ଓ ପ୍ରକାଶନ ଦିଗରେ ମୋତେ ଉତ୍ସାହିତ କରିଥିବାରୁ 'ଦୀନକୃଷ୍ଣ ସ୍ମୃତି ପରିଷଦ', ଜଳେଶ୍ୱର ସମ୍ପାଦକ ବନ୍ଧୁ ପ୍ରାଧ୍ୟାପକ ବିପିନ ବିହାରୀ ବର୍ଣ୍ଣ୍ୱାଳ ଓ ତାଙ୍କର ପତ୍ନୀ ଶ୍ରୀମତୀ ଚମ୍ପାମଣି ଘୋଷ, 'ଇଞ୍ଚୁଡ଼ି ଲବଣ ତୀର୍ଥ'ର ସମ୍ପାଦକ ଶ୍ରୀଯୁକ୍ତ ସର୍ବେଶ୍ୱର ଦାସ, 'ବାପୁ ସ୍ମାରକ ନିକେତନ', ଜଳେଶ୍ୱରର ପ୍ରାଣ ପ୍ରତିଷ୍ଠାତା ଶ୍ରୀଯୁକ୍ତ ନକୁଳ ଚରଣ ଓଝା, 'ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମେଳନ', ବାଲେଶ୍ୱରର ସଂଗଠନ ସମ୍ପାଦକ ବାଣୀଶ୍ରୀ ବିଭୂତି ଭୂଷଣ ମଲ୍ଲିକ, ଖୁଆଡ଼ ହାଇସ୍କୁଲର ଓ ଶିଖରପୁର ମଧ୍ୟ ଇଂରେଜୀ ବିଦ୍ୟାଳୟର ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ଦ୍ୱୟ ଯଥାକ୍ରମେ ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ଗାନ୍ଧୀ ଓ ଶ୍ରୀଯୁକ୍ତ ସୁଧୀର କୁମାର ଦାସ, ଜାଳଗିରି ମହାବିଦ୍ୟାଳୟର ଅଧ୍ୟକ୍ଷ ଶ୍ରୀଯୁକ୍ତ ହରେକୃଷ୍ଣ ଦାସ, ମୋର ପରମ ବନ୍ଧୁ

ଶ୍ରୀ ଗିରିଜା ଜଙ୍କର ମହାନ୍ତି ଓ ତାଙ୍କର ସହଧର୍ମିଣୀ ଶ୍ରୀମତୀ କଳ୍ପନା ରାଣୀ, 'ହାର୍ଟ' ସ୍ୱେଚ୍ଛାସେବୀ ସଂଗଠନ, କନକାଇର ସମ୍ପାଦକ ମୁରଲୀଧର ଦାସ ଅଧିକାରୀ ତଥା ଅନେକ ଶୁଭେଚ୍ଛୁ ବନ୍ଧୁମାନଙ୍କୁ ମୁଁ ମୋର ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି ।

ମୋ ସାହିତ୍ୟିକ ବନ୍ଧୁ ଡା: କୃଷ୍ଣ କୁମାର ଜେନା ଓ ତାଙ୍କର ପତ୍ନୀ ଶ୍ରୀମତୀ ପ୍ରମିଳାବାଳାଙ୍କର ଅକୁଣ୍ଠ ସାହାଯ୍ୟ, ସହଯୋଗ ଓ ପ୍ରେରଣା ବିନା ଏ ପୁସ୍ତକର ପ୍ରକାଶନ କେବେବି ସମ୍ଭବ ହୋଇ ପାରନ୍ତା ନାହିଁ । ଏ ଉଭୟଙ୍କୁ ସାଧୁବାଦ ଜଣାଇବା ପାଇଁ ମୋ ପାଖରେ ଭାଷାର ଅଭାବ ରହିଛି ।

ସର୍ବୋପରି ପତ୍ନୀ ଚଞ୍ଚଳାମଣି, ଝିଅ ଓ ଜୋଇଁ-ମମତା ଓ ବଳରାମ, ସାନଝିଅ ସୁଜାତା, ଭଣିଜା ଓ ଭଣିଜା ଜୋଇଁ—ପ୍ରଫୁଲ୍ଲ-ମନୋରମା ଏବଂ ଜୟନାରାୟଣ-ଅଳକା, ଭଣଜା-ସନ୍ତୋଷ, ମନୋଜ, ହେମନ୍ତ ଓ ଶରତ, ସାନ ଭାଇ- ତାରକାନ୍ତ, କାମିନୀ କାନ୍ତ ଓ କମଳା କାନ୍ତ, ଭଉଣୀ ଓ ଭିଣୋଇ- ଚନ୍ଦ୍ରଧର, ଲକ୍ଷ୍ମୀପ୍ରିୟା ଏବଂ ରାଧାନାଥ— ନିରୁପମା ଓ ଦାଦି ଶାଶୁ- ଗଜେନ୍ଦ୍ର ନାଥ ଓ ଅପୂର୍ବ ମଣିଙ୍କର ସାହାଯ୍ୟ ଓ ସହାନୁଭୂତି ଚିରଦିନ ମୋର ମନେ ରହିବ ।

ପୂର୍ବରୁ 'ପ୍ରଜାତନ୍ତ୍ର ସାପ୍ତାହିକୀ'ରେ ସଂକ୍ଷେପରେ ମୁଁ ଲେଖିଥିବା 'ରାଇରଙ୍ଗପୁରରେ ସ୍ୱାଧୀନତା ସଂଗ୍ରାମ' ପ୍ରକାଶ କରିଥିବାରୁ ଏହାର ସଂପାଦକ ମହୋଦୟଙ୍କୁ ଧନ୍ୟବାଦ ଜଣାଉଛି ।

ଏ ପୁସ୍ତିକାର ସମସ୍ତ ଭିତ୍ତିକ ପ୍ରକାଶନ କମନେ ଜଳେଶ୍ୱର ଅମ୍ବିକା ପ୍ରେସର ସତ୍ତ୍ୱାଧିକାରୀ ଓ କର୍ମଚାରୀମାନଙ୍କୁ ଧନ୍ୟବାଦ ଜଣାଉଛି ।

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ସମ୍ବତ୍ସରରେ ପୁଣିଥରେ ସଂଗ୍ରାମୀମାନଙ୍କ ପ୍ରତି ମୁଁ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

॥ ଜୟହିନ୍ଦ ॥

ଡଃ ଶ୍ରୀକାନ୍ତ ଚରଣ ପାଣ୍ଡା

# ଅଭିମତ

ରାଇବଣିଆରେ ସ୍ୱାଧୀନତା ସଂଗ୍ରାମ ପୁସ୍ତକଟିକୁ ଆମୂଳଚୂଳ ପାଠକରି ତା'ର ଲେଖକ ଅର୍ଥନୀତି ବିଭାଗର ପ୍ରାଧ୍ୟାପକ ଡକ୍ଟର ଶ୍ରୀକାନ୍ତ ଚରଣ ପାତ୍ରଙ୍କୁ ପ୍ରଥମେ ତାଙ୍କର ଏହି ପ୍ରକାର ସାରସ୍ୱତ କୃତି ଓ ଅଭିନବ ଉଦ୍ୟମ ପାଇଁ ଧନ୍ୟବାଦ ଦେଉଛି ।

ଓଡ଼ିଶାର ଇତିହାସ ଉପରେ କେତେକ ପୁସ୍ତକ ପ୍ରଣୟନ କରାଯାଇଥିଲେ ମଧ୍ୟ ଆଞ୍ଚଳିକ ଇତିହାସର ପ୍ରଣୟନ ଦିଗରେ ଶିକ୍ଷାବିତ୍ ମାନେ ବିଶେଷ ଭାବେ ଧ୍ୟାନ ଦେଇଥିବାର ଦେଖା ଯାଉନାହିଁ । ଅବଶ୍ୟ ଏହା କଷ୍ଟସାଧ୍ୟ ଓ ଶ୍ରମ ସାପେକ୍ଷ । ଏଥିପାଇଁ ବିଭିନ୍ନ ସ୍ଥାନକୁ ଯାଇ ତା'ର ପରିବେଶ, ସେଠାକାର ଅଧିବାସୀଙ୍କର ସାମାଜିକ, ଅର୍ଥନୈତିକ ଅବସ୍ଥା ବିଷୟରେ ନିଜେ ଅନୁଧ୍ୟାନ କରିବା ସଂଗେ ସଂଗେ ବୟୋବୃଦ୍ଧ ବ୍ୟକ୍ତିଙ୍କ ସହିତ ସାକ୍ଷାତ କରି ସେମାନଙ୍କଠାରୁ ତଥ୍ୟ ସଂଗ୍ରହ କରିବାକୁ ପଡ଼େ । ପୁନଶ୍ଚ ସଂଗ୍ରହ କରିଥିବା ସବୁ ତଥ୍ୟକୁ ଯେ ପୁସ୍ତକରେ ଲିପିବଦ୍ଧ କରିବାକୁ ପଡ଼ିବ, ତା ନୁହେଁ । କାରଣ ସାଧାରଣତଃ ତଥ୍ୟ ପ୍ରକାଶ କରିଥିବା ବ୍ୟକ୍ତି ସର୍ବଦା ସତ୍ୟ ପ୍ରକାଶ କରୁନାହାନ୍ତି; ବରଂ ନିଜ ବିଷୟରେ ଅତିରଂଜିତ କରି କହିଥାଆନ୍ତି । ତେଣୁ ତଥ୍ୟ ଗୁଡ଼ିକର ସତ୍ୟାସତ୍ୟ ବିଚାର କରି ଇତିହାସ ପୃଷ୍ଠାରେ ସ୍ଥାନିତ କରିବା ଉଚିତ । ଡକ୍ଟର ପାତ୍ର ଏ ବିଷୟରେ ବେଶ ସତର୍କତା ଅବଲମ୍ବନ କରି ତା'ର ଐତିହାସିକ ଗୁରୁତ୍ୱ ଆକଳନ ପୂର୍ବକ ତାଙ୍କ ପୁସ୍ତକରେ ପ୍ରକାଶ କରିଛନ୍ତି । ପୁସ୍ତକ ପ୍ରଣୟନ ସମୟରେ ଏ ଦିଗରେ ସେ ସମ୍ମୁଖୀନ ହୋଇଥିବା ଅସୁବିଧା ବିଷୟରେ ପୁସ୍ତକର ଆରମ୍ଭରେ ଦେଇଥିବା 'ନିଜକଥା'ରେ ଲେଖିଛନ୍ତି, "ତଥ୍ୟ ସଂଗ୍ରହରେ ନାନାବିଧ ଅସୁବିଧାର ସମ୍ମୁଖୀନ ହୋଇଛି । ବିଭିନ୍ନ ଗାଁକୁ ଯାଇ ସଂଗ୍ରାମୀମାନଙ୍କର ପରିବାରର ଜୀବିତ ଲୋକ, ଏ ଅଞ୍ଚଳର ବୟସ୍କ ତଥା ସଚେତନ ଜନସାଧାରଣ ତଥା ରାଜ୍ୟ ସ୍ତରୀୟ ଜୀବିତ ସଂଗ୍ରାମୀମାନଙ୍କ ଠାରୁ ବିବରଣୀମାନ ସଂଗ୍ରହ କରିଛି ।"

ରାଇବଣିଆରେ ସ୍ୱାଧୀନତା ସଂଗ୍ରାମ ଉପରେ ବର୍ଣ୍ଣନା ଦେବା ପୂର୍ବରୁ ଡକ୍ଟର ପାତ୍ର ସଂଗ୍ରାମର ଆରମ୍ଭ ପର୍ଯ୍ୟନ୍ତ ଓଡ଼ିଶାର ଇତିହାସ ଓ ରାଇବଣିଆର ଇତିବୃତ୍ତ ବିଶେଷତଃ ସେହି ସ୍ଥାନର ଶିକ୍ଷା, ଆର୍ଥିକ ଓ ସାମାଜିକ ଅବସ୍ଥା ଉପରେ ଆଲୋକପାତ କରି ଉକ୍ତ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମର ଘଟଣା ପ୍ରବାହ ବିଷୟରେ ଏକ ସ୍ପଷ୍ଟ ଧାରଣା ଦେବା ପାଇଁ ଉଦ୍ୟମ କରିଛନ୍ତି । ସେହି ସମୟର ଉଭୟ ସର୍ବଭାରତୀୟ ସ୍ତରରେ ଓ ଓଡ଼ିଶାରେ ସଂଘଟିତ

ଘଟଣା ପ୍ରଥମେ ଆଲୋଚନା କରି ପରେ ଗଞ୍ଜବଣିଆ ଅଞ୍ଚଳରେ ସ୍ୱାଧୀନତା ସଂଗ୍ରାମକୁ ଆଲୋଚନାର ପରିସର ମଧ୍ୟକୁ ଆଣିଛନ୍ତି । ତାହା କରିବା ମୂଳରେ ପାଠକ ପାଠିକାଙ୍କ ମାନସ ମନ୍ଥନ କରିବାର ଉଦ୍ଦେଶ୍ୟ ନିହିତ ।

୧୯୨୦ ମସିହାର ଅସହଯୋଗ ଆନ୍ଦୋଳନଠାରୁ ୧୯୩୦ ମସିହା ଆଇନ ଅମାନ୍ୟ ଆନ୍ଦୋଳନ ପର୍ଯ୍ୟନ୍ତ ଉକ୍ତ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମର ଘଟଣାବଳୀ, ସେଥିରେ ଅଂଶ ଗ୍ରହଣ କରିଥିବା କର୍ମୀ ଓ ସର୍ବୋପରି ଉତ୍କଳ ହରେକୃଷ୍ଣ ମହତାବଙ୍କର ଉଲ୍ଲେଖନୀୟ ଭୂମିକା ଉପରେ ଡକ୍ଟର ପାତ୍ରଙ୍କର ଅନୁଶୀଳନ ପ୍ରଶଂସନୀୟ । ସେହିପରି ୧୯୪୨ ମସିହାର ଭାରତ ଛାଡ଼ ଆନ୍ଦୋଳନ ସମୟରେ ଗଞ୍ଜବଣିଆର ଭୂମିକା ବିଶେଷତଃ ଆଦିବାସୀମାନଙ୍କର ସକ୍ରିୟ ସହଯୋଗ ଉପରେ ଲେଖା ଆଲୋକପାତ କରି ପୁସ୍ତକର ମର୍ଯ୍ୟାଦା ବୃଦ୍ଧି କରଇଛନ୍ତି । ସେ ଲେଖିଛନ୍ତି, "ଆଦିବାସୀମାନଙ୍କର ସକ୍ରିୟ ସହଯୋଗ ଯୋଗୁଁ ଫତିଆବାଦ ଘଟଣାରେ ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନ ଏକ ଗଣ ଆନ୍ଦୋଳନରେ ପରିଣତ ହୋଇ ପାରିଥିଲା ।" ଉକ୍ତ ଆନ୍ଦୋଳନ ପରେ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଘଟଣାବଳୀକୁ ସେ ମଧ୍ୟ ଆଲୋଚନାର ପରିସରକୁ ଆଣିଛନ୍ତି । ସର୍ବୋପରି ପୁସ୍ତକର ଶେଷଭାଗରେ ଉକ୍ତ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମୀଙ୍କର ସଂକ୍ଷିପ୍ତ ପରିଚୟ ଦେଇ ସେହି ତ୍ୟାଗଦୀପ୍ତ ବ୍ୟକ୍ତିଙ୍କ ପ୍ରତି ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଛନ୍ତି ।

ମୋଟ ଉପରେ ଡକ୍ଟର ପାତ୍ରଙ୍କର 'ଗଞ୍ଜବଣିଆରେ ସ୍ୱାଧୀନତା ସଂଗ୍ରାମ' ଏକ ଉପାଦେୟ ପୁସ୍ତକ ଓ ସମାଜର ସବୁ ଶ୍ରେଣୀର ପାଠକ ପାଠିକାଙ୍କ ଦ୍ୱାରା ଆଦୃତ ହେବ । ସେ ନିଜ କଥାରେ ଲେଖିଛନ୍ତି, 'ତଥାପି ଅନେକ ତଥ୍ୟ ଅଜଣା ରହିଥିବାର ଅନୁମାନ କରୁଛି ।' ଭବିଷ୍ୟତରେ ସେ ସବୁକୁ ଲୋକଲୋଚନକୁ ଆଣି ନୈତିକ କର୍ତ୍ତବ୍ୟ ପାଳନ କରନ୍ତୁ ।

ଲେଖକଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

ଜଗନ୍ନାଥ ପଟ୍ଟନାୟକ

ଏନ୍ ୨/୧୦୧, ନୟାପଲ୍ଲୀ (ପ୍ରଫେସର ଡକ୍ଟର ଜଗନ୍ନାଥ ପଟ୍ଟନାୟକ)
ଭୁବନେଶ୍ୱର-୧୫ ଅବସର ପ୍ରାପ୍ତ, ବିଭାଗୀୟ ମୁଖ୍ୟ ଇତିହାସ
୧୨ । ୮ । ୯୮ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ



ଦୁର୍ଗା ଦାସ
ସ୍ୱାଧୀନତା ସଂଗ୍ରାମୀ
ଅବସରପ୍ରାପ୍ତ ଶିକ୍ଷକ

ଗ୍ରାମ-ଚଳଣ୍ଡ
ଡାକଘର-କଣ୍ଠଣ୍ଡା
ଜିଲ୍ଲା-ବାଲେଶ୍ୱର

# ଅଭିମତ

ଅବସରପ୍ରାପ୍ତ ଅଧ୍ୟାପକ ଡକ୍ଟର ଶ୍ରୀକାନ୍ତ ଚରଣ ପାତ୍ରଙ୍କର ଗଡ଼ପଦାଣିଆର ସବିଶେଷ ଇତିହାସ ବର୍ଣ୍ଣିତ ପୁସ୍ତିକାର ପାଣ୍ଡୁଲିପିଟି ସେଦିନ ପଢ଼ିବାର ସୁଯୋଗ ମୋର ହୋଇଥିଲା ।

ପୁସ୍ତକଟିରେ ବନ୍ଧୁ ଶ୍ରୀଯୁକ୍ତ ପାତ୍ର ଗଡ଼ପଦାଣିଆ (ଅଧୁନା ଫତେଆବାଦ) ଅଞ୍ଚଳରେ ଭୌଗୋଳିକ ସ୍ଥିତି, ଜନଆଦି, ଆର୍ଥିକ, ସାମାଜିକ ତଥା ସାଂସ୍କୃତିକ ଇତିହାସ ଏବଂ ବିଶେଷତଃ ପ୍ରାଚୀନ ଉତ୍କଳର ଏବଂ ବିଶେଷତଃ ଭାରତବର୍ଷର ସ୍ୱାଧୀନତା ସଂଗ୍ରାମରେ ଏ ଅଞ୍ଚଳ ଅଧିବାସୀମାନଙ୍କର ବୀରତ୍ୱର ଅବଦାନ, ଜନ ପରିବର୍ତ୍ତନ ଓ ରାଜନୈତିକ ସଚେତନତା ଗବେଷଣା କରି ଉଲ୍ଲେଖ କରିବାକୁ ପ୍ରୟାସ କରିଛନ୍ତି । ଏହା ଏକ ସାଧୁ ଉଦ୍ୟମ । ଆପଣାର ଅତୀତକୁ ଠିକ୍ ଠିକ୍ ଭାବେ ଜାଣି ନଥିଲେ ଜାତିର ବର୍ତ୍ତମାନ ତଥା ଭବିଷ୍ୟତ ଦୃଢ଼ ଓ ସମୃଦ୍ଧ ହେବନାହିଁ ।

ଆଞ୍ଚଳିକ ଇତିହାସ ଦେଶର ସାମଗ୍ରିକ ଇତିହାସର ଅଂଶ ବିଶେଷ । ସଂପୂର୍ଣ୍ଣ ଇତିହାସ ରଚନା କରିବାରେ ତାହା ସହାୟକ ହୋଇଥାଏ । ସେ ଦିଗରେ ଶ୍ରୀଯୁକ୍ତ ପାତ୍ରଙ୍କର ଉଦ୍ୟମ ପ୍ରଶଂସନୀୟ ଏବଂ ଅଭିନନ୍ଦନୀୟ । ପାଣ୍ଡୁଲିପିଟିରେ ବର୍ଣ୍ଣନା ସଂକ୍ଷିପ୍ତ ହେଲେ ମଧ୍ୟ ତାହା ଏପର୍ଯ୍ୟନ୍ତ ଧରି ଅନାଲୋଚ୍ୟ ହୋଇ ରହି ଆସିଥିଲା ।

ଆଧୁନିକ କାବ୍ୟ କବିତା, ଗଳ୍ପ, ନାଟକ ରଚନା ଅପେକ୍ଷା ବ୍ୟକ୍ତିଗତ ଭାବେ ଏ ପ୍ରକାର ଗବେଷଣା ମୂଳକ ନିବନ୍ଧ ମୁଁ ପସନ୍ଦ କରେ । ଏହି ଅନାଲୋଚ୍ୟ ବିଷୟଗୁଡ଼ିକୁ ଲୋକଲୋଚନକୁ ଆଣି ପ୍ରକାଶ କରିବାର ଉଦ୍ୟମ ଦ୍ୱାରା ଏକ ସାହିତ୍ୟ ଅଭାବ ସେ ପୂରଣ କରି ପାରିଛନ୍ତି । ଏ ପ୍ରକାର ପ୍ରୟାସ ତାଙ୍କର ଅବ୍ୟାହତ ରହୁ, ଏହା ମୋର କାମନା ।

ଲେଖକଙ୍କର ସହଜ, ସରଳ ଜୀବନଟି ଦୀର୍ଘ ଓ ନିରାମୟ ହେଉ, ଜଗବନ୍ଧୁଙ୍କଠାରେ ମୋର ଏକାନ୍ତ ପ୍ରାର୍ଥନା । ଜଣେ ଆଜୀବନ ସମାଜ ସେବୀ ଭାବେ ଏହି କ୍ଷୁଦ୍ର ରଚନା ସକାଶେ ମୁଁ ତାଙ୍କଠାରେ କୃତଜ୍ଞତା ପ୍ରକାଶ କରୁଛି ।

ପରମେଶ୍ୱର ତାଙ୍କର ମଙ୍ଗଳ କରନ୍ତୁ ।

ଦୁର୍ଗା ଦାସ

# ରାଇବଣିଆରେ ସ୍ୱାଧୀନତା ସଂଗ୍ରାମ

## ପୃଷ୍ଠଭୂମି

ଆମର ଜନ୍ମଭୂମି ଭାରତ ବର୍ଷର ଇତିହାସ ଅତି ପ୍ରାଚୀନ ଓ ଗୌରବୋଜ୍ଜ୍ୱଳ ଅଟେ । ପାଞ୍ଚ ହଜାର ବର୍ଷ ପୂର୍ବରୁ ମଧ୍ୟ ଏ ଦେଶରେ ଏକ ଉନ୍ନତ ସଭ୍ୟତା ପ୍ରତିଷ୍ଠିତ ହୋଇଥିଲା । ବିଭିନ୍ନ ସମୟରେ ଏ ବିଶାଳ ଦେଶରେ ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ସ୍ଥାପିତ ହୋଇଥିଲେ ମଧ୍ୟ, ଏକା ପ୍ରକାର ସଂସ୍କୃତି, ଚଳଣି ଓ ଧର୍ମ ଧାରଣାର ବଶବର୍ତ୍ତୀ ହୋଇଥିବାରୁ ଲୋକମାନଙ୍କ ଭିତରେ ଭାବଗତ ଐକ୍ୟ ରହି ଆସିଥିଲା । ଅତୀତରେ ବିଦେଶର ଅନେକ ଜ୍ଞାନ ପିପାସୁ ଓ ଜିଜ୍ଞାସୁ ବ୍ୟକ୍ତି ଆମ ଦେଶର ଜ୍ଞାନ ଓ ବୌଦ୍ଧିକ ବିକାଶରେ ଆକର୍ଷିତ ହୋଇ ନାନା ବାଧାବିଘ୍ନ ଅତିକ୍ରମ କରି ଏଠାରେ ପହଞ୍ଚି ଜ୍ଞାନାର୍ଜନ କରିଛନ୍ତି । ସେହିଭଳି ଭାରତବର୍ଷର ବିଭବ ଓ ପ୍ରାଚୁର୍ଯ୍ୟ ଦ୍ୱାରା ପ୍ରଲୋଭିତ ହୋଇ ଅନେକ ବିଦେଶୀ ଆକ୍ରମଣକାରୀ ଏ ଦେଶରୁ ପ୍ରଭୂତ ଧନ ସମ୍ପତ୍ତି ଲୁଣ୍ଠନ କରି ନେଇ ଯାଇଛନ୍ତି ।

ମଧ୍ୟଯୁଗରେ ମୋଗଲ ମାନେ ବିଦେଶରୁ ଆସି ଏଠାରେ ଶାସନ କରିଥିଲେ ମଧ୍ୟ ଶେଷରେ ସ୍ଥାୟୀ ଭାବରେ ବସବାସ କରି ଏହାର ସୁଖ ଦୁଃଖରେ ଭାଗୀଦାର ହୋଇଛନ୍ତି । ବୈଦେଶିକ ଓ ଭାରତୀୟ ସଂସ୍କୃତି ମିଶି ଏକ ହୋଇ ଯାଇଛି ।

ଭାରତକୁ ଜଳପଥ ଆବିଷ୍କାର କରି ୧୪୯୮ ମସିହା ମେ ୧୭ ତାରିଖରେ ପର୍ତ୍ତୁଗୀଜ ନାବିକ ଭାସ୍କୋଡ଼ାଗାମା ଏ ଦେଶରେ ପହଞ୍ଚିଲେ । ତା ପରେ ପରେ ପାଶ୍ଚାତ୍ୟ ଦେଶରୁ

ପର୍ତ୍ତୁଗୀଜ, ଡଚ୍ ଇଂରେଜ ଓ ଫରାସୀ ବଣିକ ମାନଙ୍କର ସୁଅ ଛୁଟିଲା । ସେମାନେ ତତ୍କାଳୀନ ଶାସକ ମାନଙ୍କ ଠାରୁ ଅନୁମତି ଲାଭ କରି ଦେଶରେ ବିଭିନ୍ନ ସ୍ଥାନରେ ବାଣିଜ୍ୟ କରିବାରେ ଲାଗିଲେ । ମାତ୍ର ସେମାନଙ୍କର ଲକ୍ଷ୍ୟଥିଲା ସୁଦୂର ପ୍ରସାରୀ ।

ମୋଗଲ ସମ୍ରାଟ ଆଓରଙ୍ଗଜେବଙ୍କର ଧର୍ମ ଓ ଭେଦଭାବ ଭିତ୍ତିକ ଶାସନ ଯୋଗୁଁ ୧୭୦୭ ଖ୍ରୀ:ରେ ତାଙ୍କର ମୃତ୍ୟୁପରେ ବିଶାଳ ମୋଗଲ ସାମ୍ରାଜ୍ୟର ପତନ ହେଲା ଓ ଅନେକ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ଅଭ୍ୟୁଦୟ ଘଟିଲା ।

୧୭୫୭ ଖ୍ରୀ:ରେ ରବାର୍ଟ କ୍ଲାଇବ ପଲାସୀ ଯୁଦ୍ଧରେ ବଙ୍ଗଳାର ନବାବ ସିରାଜଉଦ୍ଦୌଲାଙ୍କୁ ପରାସ୍ତ କରି ଭାରତ ବର୍ଷରେ ପ୍ରଥମେ ବଙ୍ଗ ଦେଶରେ ନିଜର ଶାସନ ପ୍ରତିଷ୍ଠା କଲେ । ତାପରେ ଇତିହାସର ରଥଚକ୍ର ଘୂରିଗଲା । ସ୍ଥାନୀୟ ଲୋକ ମାନଙ୍କ ଭିତରେ ଥିବା ମତ ପାର୍ଥକ୍ୟ, ଈର୍ଷା ଓ ପରଶ୍ରୀକାତରତାର ସୁଯୋଗ ନେଇ ଏ ଦେଶର ଶାସକ ହେବା ପାଇଁ ସେମାନେ ଚକ୍ରାନ୍ତ କଲେ ଏବଂ ନାନା ପ୍ରକାରର କୂଟନୀତି ପ୍ରୟୋଗ କରି ଦେଶର ବିଭିନ୍ନ ଅଞ୍ଚଳକୁ ନିଜ ଶାସନାଧୀନ କଲେ । କାଳକ୍ରମେ ଫରାସୀ ଓ ପର୍ତ୍ତୁଗୀଜ୍ ମାନେ ଭାରତର କ୍ଷୁଦ୍ରାତି କ୍ଷୁଦ୍ର ଅଂଶ ନିଜ ଦଖଲରେ ରଖିଥିବା ବେଳେ, ବିଶାଳ ଭାରତ ଭୂଖଣ୍ଡରେ ସର୍ବତ୍ର ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀର ନିରଙ୍କୁଶ ଶାସନ ପ୍ରତିଷ୍ଠିତ ହେଲା । ମାତ୍ର ମୋଗଲ ମାନଙ୍କ ଭଳି ଏଠାକାର ସ୍ଥାୟୀ ବାସିନ୍ଦା ହେବା ଇଂରେଜ ମାନଙ୍କର ଲକ୍ଷ୍ୟ ନଥିଲା ବରଂ ଏହି ବିଜିତ ଦେଶକୁ ଲୁଣ୍ଠନ ଓ ଶୋଷଣ କରି ନିଜ ଜନ୍ମଭୂମି ଇଂଲଣ୍ଡକୁ ସମୃଦ୍ଧ କରିବା ହିଁ ସେମାନଙ୍କର ଉଦ୍ଦେଶ୍ୟ ଥିଲା ।

୧୫୬୮ ଖ୍ରୀ:ରେ ସମୃଦ୍ଧ ଓଡ଼ିଶାର ଭାଗ୍ୟରବି ଏବର ଭଦ୍ରକ ଜିଲ୍ଲାର ଧାମନଗର ଥାନା ଗୋଙ୍ଗୁଟି ନଦୀକୂଳରେ ଅସ୍ତମିତ ହୋଇଗଲା, ଯେତେବେଳେ ତତ୍‌କାଳୀନ ଓଡ଼ିଶାର ଶାସକ ମୁକୁନ୍ଦଦେବ ବର୍ହିଶତ୍ରୁ ଦ୍ୱାରା ନୁହେଁ ବରଂ ଗୃହଶତ୍ରୁ ରାମଚନ୍ଦ୍ର ଭଞ୍ଜଙ୍କ ଦ୍ୱାରା ନିହତ ହେଲେ । ଭାଗ୍ୟର ପରିହାସ ଏମିତି ଯେ ଠିକ୍ ସେହିଦିନ ରାମଚନ୍ଦ୍ର ଭଞ୍ଜ ମଧ୍ୟ ବଙ୍ଗର ନବାବ ସୁଲେମାନ କରରାଣୀଙ୍କ ପୁଅ ବାଇଜିତ୍‌ଙ୍କ ଦ୍ୱାରା ପରାସ୍ତ ଓ ନିହତ ହେଲେ । ଫଳତଃ ଓଡିଶା ବଙ୍ଗ ଦେଶର ଶାସନାଧୀନ ହୋଇଗଲା । ବଙ୍ଗ ନବାବଙ୍କ ପ୍ରଧାନ ସେନାପତି କଳାପାହାଡ଼ ଓଡ଼ିଶାର ଉତ୍ତର ସୀମାନ୍ତର ଜାଗ୍ରତ ପ୍ରହରୀ ରାଇବଣିଆ ଦୁର୍ଗର ଗୌରବକୁ ଭୂଲୁଣ୍ଠିତ କରିଦେଲେ । କାଳକ୍ରମେ ଓଡ଼ିଶା ଦୀର୍ଘଦିନ ଧରି ଆଫଗାନ ଓ ମୋଗଲ ଶାସକ ମାନଙ୍କର ଅଧୀନସ୍ଥ ହୋଇ ରହିଲା ।

ଓଡ଼ିଶାରେ ମୋଗଲ ଶାସନର ଆରମ୍ଭ ଓ ୟୁରୋପିଆନ ବଣିକ ମାନଙ୍କର ବସତି ସ୍ଥାପନ ପ୍ରାୟ ଏକ ସମୟରେ ହୋଇଥିଲା । ୧୫୯୯ ଖ୍ରୀ: ବେଳକୁ ପର୍ତ୍ତୁଗୀଜ ମାନଙ୍କର ବସତି ଓ ବାଣିଜ୍ୟ ବୃଦ୍ଧି ଲାଭ କଲା । ସୁବର୍ଣ୍ଣରେଖା ନଦୀ ମୁହାଣରେ ଥିବା ପିପିଲି ବନ୍ଦରରେ ସେମାନେ ବାଣିଜ୍ୟ କାରବାର କଲେ । ଏଠାରେ ପୂର୍ବରୁ ଡଚ୍‌ମାନଙ୍କର ବସତି ଥିଲା । ଫରାସୀମାନେ ବାଲେଶ୍ୱର ସହର ନିକଟସ୍ଥ "ଫରାସୀ ଡିଙ୍ଗାରେ" ବସବାସ କଲେ । ୧୬୩୩ ଖ୍ରୀ: ମେ ୫ ତାରିଖରେ ଇଂରେଜ ବଣିକ ଉଇଲିୟମ ବ୍ରୁଟନ ଓ କେପ୍‌ଟାନ କାର୍ଟ ରାଇଟ୍ ଅନ୍ୟ ଆଠଜଣ ବଣିକଙ୍କ ସାଥୀରେ ଆସି ମୋଗଲ ସୁବେଦାରଙ୍କୁ ସାକ୍ଷାତ କରି ଓଡ଼ିଶାରେ ବାଣିଜ୍ୟ କୋଠୀ ନିର୍ମାଣର ଅନୁମତି ଲାଭ କଲେ ।

୧୮୦୩ ଖ୍ରୀ:ରେ ଇଂରେଜମାନେ ଓଡ଼ିଶାକୁ ଅଧିକାର କଲେ । ସେମାନଙ୍କ ଶାସନରେ ଅତିଷ୍ଠ ହୋଇ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ ୧୮୧୭ ମସିହାରେ ଓଡ଼ିଆ ପାଇକମାନେ ବିଦ୍ରୋହ କଲେ । ଅବଶ୍ୟ ଏ ବିଦ୍ରୋହ ଶେଷରେ ବିଫଳ ହୋଇଗଲା ।

ଇଂରେଜମାନେ ବଙ୍ଗ ଅଧିକାର କରିବାର ଠିକ୍ ଶହେ ବର୍ଷ ପରେ ଅର୍ଥାତ୍ ୧୮୫୭ ମସିହାରେ ସେମାନଙ୍କ ଶାସନ ଓ ଶୋଷଣରେ ବ୍ୟତିବ୍ୟସ୍ତ ହୋଇ ଇଂରେଜ ସୈନ୍ୟ ବାହିନୀରେ ଥିବା ଭାରତୀୟ ସୈନ୍ୟମାନେ ବିଦ୍ରୋହ କଲେ ଓ ଦେଶର ଅନେକ ରାଜା, ମହାରାଜା ଓ ଜନସାଧାରଣଙ୍କ ଠାରୁ ଅକୁଣ୍ଠ ସାହାଯ୍ୟ ଓ ସମର୍ଥନ ଲାଭ କଲେ । ମାତ୍ର ଦୃଢ଼ ନେତୃତ୍ୱ ଓ ଯୋଜନାର ଅଭାବ ଯୋଗୁଁ ସିପାହୀ ବିଦ୍ରୋହ ବା "ପ୍ରଥମ ସ୍ୱାଧୀନତା ସଂଗ୍ରାମ" ବିଫଳ ହୋଇଗଲା । ମାତ୍ର ଏହାପରେ ଇଷ୍ଟଇଣ୍ଡିଆ କମ୍ପାନୀ ବଦଳରେ ଖୋଦ୍ ଇଂଲଣ୍ଡର ରାଜା ବା ରାଣୀ ଏ ଦେଶକୁ ଶାସନ କଲେ । ସେତେବେଳକୁ ଉତ୍ତରରେ କାଶ୍ମୀର ଠାରୁ ଦକ୍ଷିଣରେ କନ୍ୟା କୁମାରୀ ଏବଂ ଉତ୍ତର ପଶ୍ଚିମରେ ଆଫଗାନିସ୍ଥାନ ଠାରୁ ଆରମ୍ଭ କରି ପୂର୍ବରେ ବ୍ରହ୍ମଦେଶ ଯାଏଁ ଏହି ବିଶାଳ ଭାରତୀୟ ଉପମହାଦେଶ ବ୍ରିଟିଶ ସାମ୍ରାଜ୍ୟର ଅଧୀନସ୍ଥ ହୋଇ ସାରିଥିଲା ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ନାନାବିଧ କାରଣରୁ ଦେଶରେ ଜାତୀୟ ଚେତନାର ଅଭ୍ୟୁଦୟ ଘଟିଲା । ସେଗୁଡ଼ିକ ହେଲା ଭାରତର ରାଜନୈତିକ ଏକୀକରଣ, ପାଶ୍ଚାତ୍ୟ ଶିକ୍ଷାର ପ୍ରସାର, ସାମାଜିକ ଓ ଧାର୍ମିକ ଚିନ୍ତାଧାରାର ପରିବର୍ତ୍ତନ ପାଇଁ ସଂଘଟିତ ହୋଇଥିବା ଆନ୍ଦୋଳନ ଓ କାର୍ଯ୍ୟକ୍ରମ ସମୂହ, ଭାରତୀୟ ମାନଙ୍କର

ଅର୍ଥନୈତିକ ଦୁର୍ଗତି, ସମ୍ବାଦ ପତ୍ର ଓ ସାମ୍ବାଦିକମାନଙ୍କର ଜନ ସଚେତନତା ସୃଷ୍ଟି ଏବଂ ପରିଶେଷରେ ୧୮୫୭ ମସିହାରେ ସିପାହୀ ବିଦ୍ରୋହ ।

ଭାରତୀୟ ମାନଙ୍କର ଦୁଃଖ ଦୁର୍ଦ୍ଦଶାର ଦୂରୀକରଣ ପାଇଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ ବିଭିନ୍ନ ସଂଗଠନମାନ ଗଢ଼ି ଉଠିଲା । ସେଥି ମଧ୍ୟରୁ କେତୋଟି ହେଲା— ୧୮୬୪ରେ ଦାଦାଭାଇ ନାଓରୋଜୀଙ୍କ ଦ୍ୱାରା ଇଂଲଣ୍ଡରେ ପ୍ରତିଷ୍ଠିତ "ପ୍ରାଚ୍ୟ ଭାରତୀୟ ସମାଜ", ୧୮୭୦ରେ ମାନ୍ଦ୍ରାଜ ସାର୍ବଜନୀକ ସଭା, ମହାଜନ ସଭା ଇତ୍ୟାଦି । ମାତ୍ର ଅନ୍ୟ ଏକ ପ୍ରମୁଖ ଅନୁଷ୍ଠାନ "ଭାରତୀୟ ଏସୋସିଏସନ" ସୁରେନ୍ଦ୍ର ନାଥ ବାନାର୍ଜିଙ୍କ ନେତୃତ୍ୱରେ ୧୮୮୩ ମସିହାରେ ଜନ୍ମଲାଭ କଲା । ସେତେବେଳେ ସିଦ୍ଧାନ୍ତ ନିଆ ଯାଇଥିଲା ଯେ ଏହାର ପରବର୍ତ୍ତୀ ଅଧିବେଶନ ୧୮୮୫ ମସିହା ଡିସେମ୍ବର ମାସରେ ପୁନା ଠାରେ ଅନୁଷ୍ଠିତ ହେବ ଓ ଏକ ସର୍ବ ଭାରତୀୟ କଂଗ୍ରେସ ପ୍ରତିଷ୍ଠା କରାଯିବ । ମାତ୍ର ପୁନାରେ ହଇଜା ଲାଗିଥିବା ଯୋଗୁଁ ଏ ଅଧିବେଶନର ସ୍ଥାନ ବମ୍ବେକୁ ସ୍ଥାନାନ୍ତରିତ ହେଲା । ବ୍ରିଟିଶ ସରକାରଙ୍କର ଜଣେ ଅବସର ପ୍ରାପ୍ତ କର୍ମଚାରୀ ଆଲାନ ଅକ୍‌ଟାଭିଆନ ହ୍ୟୁମଙ୍କ ଉତ୍ସାହ ଓ ପ୍ରେରଣାରେ "ଭାରତୀୟ ଜାତୀୟ କଂଗ୍ରେସ" ଆତ୍ମ ପ୍ରକାଶ କଲା । ଏହାର ଲକ୍ଷ୍ୟ ଥିଲା ଦେଶବାସୀଙ୍କର ଦୁଃଖ କଷ୍ଟ ଲାଘବ କରିବା ଦିଗରେ କାର୍ଯ୍ୟ କରିବା ତଥା ଶାସନ କ୍ଷେତ୍ରରେ ଥିବା ତ୍ରୁଟି ବିଚ୍ୟୁତି ଗୁଡ଼ିକ ଦର୍ଶାଇ ସେ ଗୁଡ଼ିକର ସଂଶୋଧନ ପାଇଁ ସରକାରଙ୍କୁ ମାର୍ଗଦର୍ଶନ ଦେବା । ୧୮୮୫ ମସିହା ଡିସେମ୍ବର ୨୮ ତାରିଖରେ ବମ୍ବେର ଗୋକୁଳ ଦାସ ତେଜପାଲ ସଂସ୍କୃତ ମହାବିଦ୍ୟାଳୟ ଠାରେ ଏ ଅନୁଷ୍ଠାନର ପ୍ରଥମ

ଅଧିବେଶନ ବଙ୍ଗଳାର ପ୍ରସିଦ୍ଧ ବାରିଷ୍ଟର ଉମେଶ ଚନ୍ଦ୍ର ବାନାର୍ଜିଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ପ୍ରଥମେ ଏହା ଏକ ସୌଖୀନ ଅନୁଷ୍ଠାନ ରୂପେ କାର୍ଯ୍ୟ କରୁଥିଲା ଓ ଏହାର କାର୍ଯ୍ୟ କଳାପ ଉଦାରପନ୍ଥୀମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା, ମାତ୍ର ୧୯୦୫ ମସିହାରେ ବଙ୍ଗ ବିଭାଜନ ପରଠାରୁ ଅବସ୍ଥା ବଦଳିଗଲା ଓ ଆପତ୍ତି ଅଭିଯୋଗ ଉପସ୍ଥାପନ କରିବା ବଦଳରେ ଦାବୀ ଓ ପ୍ରତିବାଦ କରିବା ସ୍ତରକୁ ଏହାର ଲକ୍ଷ୍ୟରେ ପରିବର୍ତ୍ତନ ହେଲା । ଏହାର ସଭ୍ୟ ସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇ ବାସ୍ତବରେ ଏହା ଏକ ସର୍ବ ଭାରତୀୟ ଓ ପ୍ରତିନିଧି ମୂଳକ ଅନୁଷ୍ଠାନରେ ପରିଣତ ହେଲା ଓ ଏ ଅନୁଷ୍ଠାନର ନିୟନ୍ତ୍ରଣ କଠୋର ପନ୍ଥୀମାନଙ୍କ ହାତକୁ ଚାଲିଗଲା । ମାତ୍ର ୧୯୧୯ ମସିହା ଠାରୁ ଭାରତୀୟ ଜାତୀୟ କଂଗ୍ରେସ ମହାତ୍ମା ଗାନ୍ଧୀଙ୍କର ବଳିଷ୍ଠ ନେତୃତ୍ୱରେ ଅହିଂସା, ଅସହଯୋଗ ଓ ଆଇନ ଅମାନ୍ୟ ପନ୍ଥାମାନ ଅବଲମ୍ବନ କରି ଆନ୍ଦୋଳନ ଚଳାଇ ଦେଶର ସ୍ୱାଧୀନତା ହାସଲ ଦିଗରେ କାର୍ଯ୍ୟ କରି ଚାଲିଲା । ପରିଶେଷରେ ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖରେ ଭାରତ ସ୍ୱାଧୀନତା ଲାଭ କଲା ।



# ରାଇବଣିଆର ଇତିବୃତ୍ତ

ଇତିହାସ ପୃଷ୍ଠାରେ ରାଇବଣିଆର ଐତିହ୍ୟ ଓ ଗୌରବର ଗାଥା ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି । ଓଡ଼ିଶାର ଉତ୍ତର ସୀମାନ୍ତର ସୁରକ୍ଷା ପାଇଁ ଆଜକୁ ପ୍ରାୟ ଆଠଶହ ବର୍ଷ ତଳେ ଆୟତନରେ ବାରବାଟୀ ଦୁର୍ଗଠାରୁ ମଧ୍ୟ ବୃହତ୍ତର ଏକ ସୁଦୃଢ଼ ଦୁର୍ଗ ଏଠାରେ ନିର୍ମାଣ କରାଯାଇଥିଲା । ସେହି ଅଞ୍ଚଳ ଓଡ଼ିଶାର ଅନ୍ୟ ଅଞ୍ଚଳ ସହିତ ଇଂରେଜ ଶାସନାଧୀନ ହେଲା ୧୮୦୩ ମସିହାରେ । ଉତ୍ତରରେ ମେଦିନୀପୁର ଜିଲ୍ଲା ଓ ପୂର୍ବତନ ମୟୂରଭଞ୍ଜ ରାଜ୍ୟର ଓଲମରା ପ୍ରଗଣା ଏବଂ ପଶ୍ଚିମରେ ମୟୂରଭଞ୍ଜ ରାଜ୍ୟ ଏ ଅଞ୍ଚଳକୁ ଘେରି ରହିଥିଲା । ପୂର୍ବ ଓ ଦକ୍ଷିଣରେ ସୁବର୍ଣ୍ଣରେଖା ନଦୀ ଦ୍ୱାରା ଏହା ଓଡ଼ିଶାର ଅନ୍ୟ ଅଞ୍ଚଳ ଠାରୁ ବିଶେଷତଃ ଜଳେଶ୍ୱର ଠାରୁ ବିଚ୍ଛିନ୍ନ ହୋଇ ରହିଥିବା ବେଳେ ପଶ୍ଚିମ ଦିଗ ଘନ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା ।

ଏବର ରାଇବଣିଆ ଥାନା ମୁଖ୍ୟତଃ ପୂର୍ବର ଫତ୍ତେଆବାଦ ପ୍ରଗଣା ଓ ମୟୂରଭଞ୍ଜ ଜିଲ୍ଲାରୁ ୧୯୪୯ ମସିହା ଡିସେମ୍ବର ୧୫ ତାରିଖରେ ବାଲେଶ୍ୱର ଜିଲ୍ଲାରେ ମିଶିଥିବା ଓଲମରା ପ୍ରଗଣାକୁ ନେଇ ଗଠିତ । ଫତ୍ତେଆବାଦ ପ୍ରଗଣା ସ୍ୱାଧୀନତା ପୂର୍ବରୁ ଜଳେଶ୍ୱର ଥାନାର ଅଂଶ ବିଶେଷ ଥିଲା । ତେଣୁ "ରାଇବଣିଆରେ ସ୍ୱାଧୀନତା ସଂଗ୍ରାମ" କହିଲେ କେବଳ ଫତ୍ତେଆବାଦ ପ୍ରଗଣାରେ ସଂଘଟିତ ହୋଇଥିବା ସ୍ୱାଧୀନତା ସଂଗ୍ରାମକୁ ହିଁ ବୁଝାଏ ।

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକର ଶେଷ ସମୟ ବେଳକୁ ଏ ଅଞ୍ଚଳ ସବୁ ଦିଗରୁ ଅବହେଳିତ ହୋଇ ଅନ୍ଧକାରରେ ସଡ଼ୁଥିଲା ।

# ଅନ୍ଧକାରର ଅହଂକାର

ରାଇବଣିଆ ଅଞ୍ଚଳରେ ଗମନାଗମନର ଉନ୍ନତ ଆଦୌ ହୋଇ ନ ଥାଏ । ହାତିଗଡ଼ ଠାରୁ ଚକଦହ ପାଖ ସୁବର୍ଣ୍ଣରେଖା ନଦୀକୂଳ ଯାଏ ଲମ୍ବି ଯାଇଥିବା କଚ୍ଚା ରାସ୍ତାର ନାମ "ଶାନ୍ତିପୁର ସଡ଼କ" । ତାହାହିଁ ସେତେବେଳେ ମୁଖ୍ୟ ରାସ୍ତା । ତା ପୁଣି ବର୍ଷର ବେଶୀ ସମୟ ଅଗମ୍ୟ । ବର୍ଷା ଦିନେ ଆଣ୍ଠୁଏ କାଦୁଅରେ ଯିବା ଆସିବା କରିବାକୁ ପଡ଼େ । ସଡ଼କର ଅଧିକାଂଶ ସ୍ଥାନରେ ଧୋଇ ହୋଇଯାଏ । ବନ୍ୟା ଜଳ ନିଷ୍କାସନର କିଛି ବନ୍ଦୋବସ୍ତ ନ ଥାଏ । ଗୋଟିଏ ଗାଁରୁ ଅନ୍ୟ ଗାଁକୁ ଯିବା ଆସିବା କରିବାକୁ ହେଲେ ଗାଁ ଗୋହିରୀ ଓ ଚାଷ ଜମିର ହିଡ଼ ରାସ୍ତା ହିଁ ମୁଖ୍ୟ ମାଧ୍ୟମ । ସ୍ଥାନେ ସ୍ଥାନେ ଗୋହିରୀ ଦୁଇ ପଟେ କିଆ ଗଛର ବଣ । କାନକୋଳି, ଲଟକୋଳି ଭଳି କଣ୍ଟା ବୁଦା ମଝି ଦେଇ ପାଦଚଲା ରାସ୍ତା ।

ଏବର ଅନ୍ୟତମ ମୁଖ୍ୟ ରାସ୍ତା ରାଇବଣିଆରୁ ଖୁଆଡ଼ ଓ ମୟୁରଭଞ୍ଜ ଅମର୍ଦ୍ଦା ଗାଁ ଦେଇ ରାଜଘାଟ ଠାରେ ଜଗନ୍ନାଥ ସଡ଼କ (ଓ. ଟି. ରୋଡ଼) ସହିତ ମିଶିଥିବା ସୁଲେମନ ରୋଡ଼ର ଅସ୍ତିତ୍ୱ ସେତେବେଳେ ନ ଥିଲା । ୧୯୪୩ ମସିହାର ଦୁର୍ଭିକ୍ଷ ବେଳେ ଏହା ତିଆରି ହୋଇଥିଲା । ତତ୍କାଳୀନ ବାଲେଶ୍ୱରର କଲେକ୍ଟର ଆଇରିସ୍ ଭଦ୍ର ଲୋକ ଏଫ୍. ସୁଲୋମନଙ୍କ ନାମାନୁସାରେ ଏ ସଡ଼କର ନାମ କରଣ କରାଯାଇଛି । ସେତେବେଳେ ଏହା ଏକ ପାଦଚଲା ରାସ୍ତା ଥିଲା । ଏହାର ଉଭୟ ପାଖରେ ଘନ ଜଙ୍ଗଲ । ଦିନବେଳେ ମଧ ବାଘ, ଭାଲୁ ଚଳ ପ୍ରଚଳ ହୁଅନ୍ତି । ଚୋର, ଡକାୟତଙ୍କର ଭୟ ତ ସବୁବେଳେ ଲାଗିଥାଏ । ଆଜିକାଲି ଅବଶ୍ୟ

ଘନ ଜଙ୍ଗଲ ନାହିଁ କିମ୍ବା ହିଂସ୍ର ଜୀବ ଜନ୍ତୁର ଭୟ ବି ନାହିଁ । କିନ୍ତୁ ବିପଦ ରହିଛି ମଣିଷ ଠାରୁ । ଦିନ ଦ୍ୱିପ୍ରହରରେ ବି ବାଟୋଇ ଓ ବସ୍-ଯାତ୍ରୀଙ୍କ ଠାରୁ ମାଡ଼ଦେଇ ଜିନିଷପତ୍ର ଲୁଟ୍‌ପାଟ କରିନେବା ଏବେବି ଲାଗି ରହିଛି ।

ବାହାର ଦୁନିଆ ସହିତ ସମ୍ପର୍କ ରଖିବାକୁ ହେଲେ ପାଦରେ ଚାଲି ଚାଲି ଜଳେଶ୍ୱର ଯିବାକୁ ହେବ । ସୁବର୍ଣ୍ଣରେଖା ନଦୀକୁ ନୌକାରେ ପାରି ହେବାକୁ ପଡ଼େ । ନଦୀଘାଟକୁ ଯିବା ଓ ନଦୀ ପାର ହେବା କଠିକର ପାଠ ଥିଲା । ନୌକା ଘାଟଗୁଡ଼ିକ ବାଲେଶ୍ୱରରେ ନିଲାମ କରାଯାଏ । ଲକ୍ଷ୍ମଣନାଥ ବା ଜଳେଶ୍ୱର ଷ୍ଟେସନରେ ରେଳଗାଡ଼ି ଚଢ଼ି ବାଲେଶ୍ୱର ଯିବାକୁ ପଡ଼େ । ଜଳେଶ୍ୱରରୁ ବିଭିନ୍ନ ସ୍ଥାନକୁ ବସ୍ ଚଳାଚଳ କରୁ ନ ଥାଏ । ଏବେ ରାଇବଣିଆ ଅଞ୍ଚଳରେ କେବଳ ସୁଲେମନ ରୋଡ଼ ଦେଇ ଡାଣ୍ଡିଗଡ଼, ରାଇବଣିଆ, ଓଲମାରା ଓ ଖୁଆଡ଼ ପ୍ରଭୃତି ମୁଖ୍ୟ ସ୍ଥାନରୁ ବାଲେଶ୍ୱର ଓ ବାରିପଦାକୁ ବସ୍ ଚଳାଚଳ କରୁଛି । ଦିନକୁ ଗୋଟିଏ ଦୁଇଟି ମାତ୍ର ବସ୍ । ଅନ୍ୟ ଅଞ୍ଚଳ ସବୁ ଏ ସୁବିଧାରୁ ବିଂଶ ଶତାବ୍ଦୀର ଶେଷରେ ବି ବଞ୍ଚିତ । ସେତେବେଳେ ବସ ଚାଲିବାର ବା ଚଳେଇବାର ଚିନ୍ତା ବି କେହି କରୁ ନ ଥିଲେ ।

## ଶିକ୍ଷା

ଗାଁ ଗୁରୁଶାଳୀ ଓ ଅବଧାନଙ୍କ ପାଖରେ ପାଠପଢ଼ା ହେଉଥାଏ । ଦକ୍ଷିଣ ବାଲେଶ୍ୱର ଓ କଟକ ଜିଲ୍ଲା ଭଳି ଦୂରସ୍ଥାନରୁ ଅବଧାନମାନେ ଆସି ପିଲାମାନଙ୍କୁ ପଢ଼ାଉଥିଲେ । ହରେକୃଷ୍ଣ ମହତାବ ବାଲେଶ୍ୱର ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ

ହେବାପରେ ଚମାରଗାଁ, ଭଣ୍ଡାରପଲ୍ଲି, ଖୁଆଡ଼, ଘଇବଣିଆ ଓ ବରଡ଼ିହା ଆଦି ଗାଁ ମାନଙ୍କରେ ନିମ୍ନ ପ୍ରାଥମିକ ବିଦ୍ୟାଳୟ ମାନ ଖୋଲିଲା ଓ କାଳକ୍ରମେ ଏ ଗୁଡ଼ିକ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପରିଣତ ହେଲା । ସ୍ୱାଧୀନତା ପ୍ରାପ୍ତି ଯାଏ ମଧ୍ୟ ଇଂରାଜୀ ବା ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ନ ଥାଏ । କ୍ୱଚିତ କେହି ଉଚ୍ଚଶିକ୍ଷା ପାଇଁ ଆଗ୍ରହ ପ୍ରକାଶ କଲେ ତାକୁ ଲକ୍ଷ୍ମଣନାଥ ବା ଜମାଳପୁର ଯାଇ ମାଇନର ବା ହାଇସ୍କୁଲରେ ପଢ଼ିବାକୁ ହେଉଥାଏ । ଜଳେଶ୍ୱର ହାଇସ୍କୁଲ ମଧ୍ୟ ସ୍ୱାଧୀନତା ପରେ ପ୍ରତିଷ୍ଠିତ ହେଲା । କେହି କଲେଜରେ ପଢ଼ିବାକୁ ଚାହିଁଲେ ବା ଆର୍ଥିକ ସମ୍ବଳ ଥିଲେ ତାକୁ କଲିକତା ବା କଟକ ଯାଇ ପଢ଼ିବାକୁ ପଡ଼ୁଥିଲା । କାରଣ ବାଲେଶ୍ୱରରେ ମଧ୍ୟ କଲେଜ ପ୍ରତିଷ୍ଠିତ ହେଲା ୧୯୪୪ରେ । ସ୍ୱାଧୀନତା ଲଭିବାର ଅଳ୍ପ କେତେବର୍ଷ ଆଗରୁ । ତେବେ ଏ ଅଞ୍ଚଳରୁ କେହି କଟକ ବା କଲିକତା ଯାଇ ପଢ଼ି ନ ଥିଲେ ।

## ଆର୍ଥିକ ଅବସ୍ଥା

କୃଷହିଁ ମୁଖ୍ୟ ଜୀବିକା ଥିଲା । ବର୍ଷକରେ କେବଳ ଗୋଟିଏ ଥର ଧାନ ଫସଲ ଚାଷ କରାଯାଏ ବର୍ଷାପାଣି ଉପରେ ନିର୍ଭର କରି । ତେଣୁ ଅତିବୃଷ୍ଟି ବା ଅନାବୃଷ୍ଟିରେ ଫସଲ ନଷ୍ଟ ହେଲେ ଦ୍ୱିତୀୟ ଥର କୃଷକର କ୍ଷୟକ୍ଷତିର ଭରଣା କରିବାର ସମ୍ଭାବନା ନ ଥିଲା । ବର୍ଷକୁ ତିନି ଚାରିଥର ବନ୍ୟା ତ ନିଶ୍ଚୟ ହୁଏ । ପୁଣି ଚାଷର ଆରମ୍ଭରେ ବା ଶେଷ ପର୍ଯ୍ୟାୟରେ ଅନାବୃଷ୍ଟି ହେବା ଏକ ସାଧାରଣ କଥା ଥିଲା । ଅନେକ ଥର ବନ୍ୟା ହେବା ଫଳରେ ଅନେକ ଚାଷଜମି ବାଲିଚର ହୋଇ ଯାଉଥିଲା । ଗହିର ଜମିରେ ଫାଲ୍‌ଗୁନ, ଚୈତ୍ର ମାସ ଯାଏ

ପାଣି ଜମି ରହୁଥିଲା । ତେବେ ବର୍ଷାଦିନ ପରେ ଶରତ ଓ ଶୀତ ଋତୁରେ କିଛି କିଛି ଚାଷ ଜମିରେ ସେଇ ବର୍ଷାପାଣି ଉପରେ ନିର୍ଭର ରବି ଚାଷ କରା ଯାଉଥାଏ । ଦକ୍ଷିଣ ପଶ୍ଚିମରେ ଥିବା ଠିକରା ଗ୍ରାମ ପାଖରୁ ଆରମ୍ଭ କରି ଉତ୍ତର ପୂର୍ବରେ ଦକ୍ଷିଣ ବ୍ରହ୍ମବରଜପୁର ଓ ଗୁଆ ଡିହଆ ଯାଏ ସୁବର୍ଣ୍ଣରେଖା ନଦୀର କୂଳ ଅଞ୍ଚଳ ଅତି ଉର୍ବର । ପାଣିର ଅଭାବ ନ ଥାଏ । ବିଭିନ୍ନ ରକମର ପନିପରିବା ଓ ଋତୁ ଭିତ୍ତିକ ଫସଲ ସବୁ ଚାଷ କରା ଯାଉଥାଏ ।

ଆଉ ଗୋଟିଏ କଥା ସତ ଯେ ବର୍ଷାଦିନିଆ ଧାନ ଫସଲ ଅମଳ ପରେ ସୁବର୍ଣ୍ଣରେଖାର କୂଳ ଅଞ୍ଚଳକୁ ବାଦଦେଲେ, ଅନ୍ୟ ଚାଷୀମାନଙ୍କ ହାତରେ ଆଉ ବିଶେଷ କିଛିକାମ କରିବାକୁ ନ ଥାଏ । ଅର୍ଥାତ୍ ପୌଷ ବା ମାଘ ମାସ ପରେ ସେମାନେ ବେକାର ରହୁଥିଲେ । ରୋଜଗାର କିଛି ନ ଥାଏ ବା ରୋଜଗାରର ବାଟ ବି କିଛି ନ ଥାଏ । ତେଣୁ ମାଘ ମାସଠାରୁ ଆରମ୍ଭ କରି ଲୋକମାନଙ୍କର ତାସ, ପଶା ଖେଳ; ନ ହେଲେ ବାଗୁଡ଼, ସୀତାଗୋଟି ଓ ବୋହୂଗୋଟି ଖେଳରେ ସମୟ କଟୁଥାଏ । ଅଯଥାରେ କିଛି ଲୋକ ସବୁବେଳେ ପରଚର୍ଚ୍ଚା ଓ ପର ନିନ୍ଦାରେ ଲାଗିରହିବାକୁ ସୁଖ ପାଉଥିଲେ ବା ନିଜର ଧନ୍ଦା କରି ନେଉଥିଲେ । ଆଜିକାଲି ଭଳି ଲୋକେ ଏତେ କାର୍ଯ୍ୟବ୍ୟସ୍ତ ନ ଥିଲେ । ଅଶିକ୍ଷା ଓ କୁସଂସ୍କାର ସମାଜକୁ ଗ୍ରାସ କରି ରହିଥିଲା ।

ଗାଁର ଆର୍ଥିକ ମେରୁଦଣ୍ଡ ଦୋହଲି ଯାଉଥାଏ । କାର୍ଯ୍ୟକ୍ଷମ ଲୋକେ କାମ ଖୋଜି ଖୋଜି କଲିକତାର ଚଟକଳ, ଆସାମର ଚା ବଗିଚା ଓ ଟାଟା ନଗରର ଲୁହା କାରଖାନାକୁ ଯାଇ କୁଲିଗିରି ବା ସାଧାରଣ ଶ୍ରମିକ ଭାବେ କାମ କରିବା ଏକ ସାଧାରଣ କଥାଥିଲା ।

ପୁଣି ସେହିସବୁ ସହରର ବାବୁମାନଙ୍କ ବାଡ଼ିରେ ଅନେକେ ଘରର ପାଚକ ଓ ଚାକର କାମ ମଧ୍ୟ କରୁଥିଲେ । ବାବୁମାନଙ୍କର ଗଞ୍ଜଣା, ଛିଗ୍ଗାକର କଥା ଓ ଆବେଗ ସବୁ ସହିବାକୁ ପଡ଼ୁଥିଲା । କିନ୍ତୁ ଗାଁକୁ ଫେରିବା ବେଳେ ସେମାନେ 'ବାବୁ' ସାଜ ଫେରୁଥିଲେ । ସେମାନଙ୍କର ବେଶଭୂଷାର ଚାକଚକ୍ୟ, ଚାଲିଚଳନରେ ସହରି ଢାଞ୍ଚାର ଅନୁକରଣ, କଥାବାର୍ତ୍ତାରେ ବଙ୍ଗଳା ଓ ହିନ୍ଦିର ମିଶ୍ରଣ ସାଧାରଣ ଗାଁ ଲୋକଙ୍କୁ ବେଶ୍ ଆମୋଦ ଯୋଗାଉଥ ଏ । ବଡ଼ ବଡ଼ ସହରର ନାନା ରକମର କଥାଶୁଣି ସାଧାରଣ ମଳମୁଣ୍ଡିଆ ଅଶିକ୍ଷିତ କୃଷୀ ଲୋକେ ବଡ଼ ବଡ଼ ଆଖିକରି ସେମାନଙ୍କୁ ଅନାଉଥିଲେ । ଅନ୍ୟ ସାଙ୍ଗ ସାଥୀମାନେ ବେଶ କିଛିଦିନ ଯାଏ ସେମାନଙ୍କୁ ଅନୁକରଣ କରୁଥିଲେ । ସେମାନେ ଗାଁରୁ ପୁଣି କାମ ଜାଗାକୁ ଚାଲିଯିବା ପରେ ମଧ୍ୟ ସେମାନଙ୍କ ସ୍ମୃତି ସବୁ ମନେ ରହୁଥିଲା । କାର୍ଯ୍ୟକ୍ଷମ ଯୁବକମାନେ ବାହାରକୁ ଚାଲିଯିବା ପରେ ଗାଁରେ ବେଶୀଭାଗ ରହୁଥିଲେ ବୟସ୍କ, ନାବାଳକ ଓ ସ୍ତ୍ରୀ ଲୋକମାନେ ।

## ସ୍ୱାସ୍ଥ୍ୟ

ଚିକିତ୍ସାର ସୁବିଧା କିଛି ନ ଥିଲା । ସରକାରୀ ଡାକ୍ତରଖାନା ନ ଥାଏକି ଡାକ୍ତରୀ ପାଠପଢ଼ି କେହି ବ୍ୟକ୍ତିଗତ ଚିକିତ୍ସା କରୁ ନ ଥିଲେ । ଗାଁ ଗାଁରେ କେବଳ କବିରାଜୀ ଚିକିତ୍ସା ଚାଲୁଥିଲା । ଏମାନେ ସମସ୍ତେ ଥିଲେ ବଂଶାନୁକ୍ରମିକ ଚିକିତ୍ସକ । ତେବେ ସେମାନଙ୍କ ମଧ୍ୟରେ ସୁଚିକିତ୍ସକ ମଧ୍ୟ ଥିଲେ । ସେମାନଙ୍କ ଅକ୍ତିଆରର ବାହାରକୁ ରୋଗ ଚାଲିଗଲେ ଭାଗ୍ୟ ଓ ଭଗବାନଙ୍କ ଉପରେ ନିର୍ଭର କରିବାକୁ ପଡ଼ୁଥିଲା ।

ମେଲେରିଆ, ବସନ୍ତ ଓ ହଇଜା ପ୍ରତିବର୍ଷ ମହାମାରୀ ଆକାରରେ ଦେଖା ଯାଉଥାଏ । ବସନ୍ତ ଓ ଝାଡ଼ା ବାନ୍ତିରୁ ଆରୋଗ୍ୟ ପାଇଁ

ମା’ ଠାକୁରାଣୀଙ୍କ ଉପରେ ଲୋକେ ବେଶୀ ନିର୍ଭର କରୁଥାନ୍ତି । ରୋଗୀ ଅଧିକ ସଂଖ୍ୟାରେ ମରିଗଲେ, ଅନ୍ତେର ଥରେ ଶବ ଉଠାଇବା ଓ ଦାହ କରିବା ପାଇଁ ମଧ୍ୟ ଲୋକ ମିଳୁ ନ ଥିଲେ । ଶବକୁ ନ ପୋତି ବା ନପୋଡ଼ି ଶ୍ମଶାନରେ ଫିଙ୍ଗାଇ ଦେଉଥିବାରୁ ରୋଗ ବ୍ୟାପିବାରେ ତାହା ସହାୟକ ହେଉଥିଲା । ସରକାରଙ୍କ ତରଫରୁ ପ୍ରାପ୍ୟ ପ୍ରତିକାର ହେଉ ନ ଥାଏ ।

ପିଇବା ପାଣିର ଉତ୍କଟ ଅଭାବ ରହିଥିଲା । ଗାଁର ଲୋକମାନେ କୂଅ ବା ପୋଖରୀର ପାଣି ବ୍ୟବହାର କରୁଥିଲେ । ସେହି ଏକା ପୋଖରୀରୁ ଲୋକେ ଗାଧୋଇବା, ଲୁଗା ଓ ଅପରିଷ୍କାର ଜିନିଷ ସଫା କରିବା ତଥା ଗୋ-ମହିଷାଦି ପଶୁଙ୍କୁ ଗାଧୋଇ ଦେବା କାମ ମଧ୍ୟ କରୁଥିବା ଯୋଗୁଁ ପାଣି ଅପରିଷ୍କାର ହେଉଥିଲା ଓ ସେହି ପାଣିର ବ୍ୟବହାର ଫଳରେ ତାହା ରୋଗ ବ୍ୟାପିବାରେ ସହାୟକ ହେଉଥିଲା । ଦଳୁଆ ଓ ଚକୁଆ ପୋଖରୀ ନାଳ ନର୍ଦ୍ଦମା ଓ ଖାଲ ଜାଗାରେ ମଶା, ମାଛି ସ୍ୱଚ୍ଛନ୍ଦରେ ସେମାନଙ୍କ ବଂଶବୃଦ୍ଧି କରି ବିଭିନ୍ନ ରୋଗ ବ୍ୟାପିବାରେ ସାହାଯ୍ୟ କରୁଥିଲେ । ମେଲେରିଆର ପ୍ରାଦୁର୍ଭାବ ଯୋଗୁଁ ବର୍ଷାଦିନେ ଅନେକ ଲୋକ ମୃତ୍ୟୁ ମୁଖରେ ପଡ଼ୁଥିଲେ । ଲକ୍ଷ୍ମୀନାଥ ହାଇସ୍କୁଲ ପ୍ରତିବର୍ଷ ଏହି ରୋଗ ପାଇଁ ଅନେକ ଦିନ ଧରି ବନ୍ଦ ହୋଇ ଯାଉଥିଲା ।

ଦୂଷିତ ପରିବେଶ, ଦୂଷିତ ପାଣିର ବ୍ୟବହାର, ରୋଗର ପ୍ରତିଷେଧକ ଓ ପ୍ରତିକାର ବିଷୟରେ ଅନଭିଜ୍ଞତା, ଉପଯୁକ୍ତ ଚିକିତ୍ସକ ଓ ଚିକିତ୍ସାର ଅଭାବ ଯୋଗୁଁ ରୋଗ ବ୍ୟାପିବାରେ ବିଳମ୍ବ ହେଉ ନ ଥିଲା ।

## ସାମାଜିକ ବ୍ୟବସ୍ଥା

ଜାତିଭେଦ ପ୍ରଥା ଦୃଢ଼ ଥିଲା । ସ୍ପୃଶ୍ୟ, ଅସ୍ପୃଶ୍ୟ ଏହିପରି ଦୁଇ ଭାଗରେ ସମାଜ ବିଭକ୍ତ ହୋଇ ଯାଇଥିଲା କହିଲେ ଚଳେ । ଅସ୍ପୃଶ୍ୟଲୋକମାନେ ସମାଜର ନିପୀଡ଼ିତ ଯଥାଯୋଗ୍ୟ ମାନ ନେଇଥିଲେ । ସେମାନେ ତଥାପି ବି 'ହରିଜନ' ଆଖ୍ୟା ପାଇ ନ ଥାନ୍ତି ।

## ବିବାହ

ବାଲ୍ୟ ବିବାହ ଏକ ସାଧାରଣ ପ୍ରଥା ଥିଲା । ସାତରୁ ନଅ ବର୍ଷ ବୟସର ଝିଅ ଓ ଦଶରୁ ବାର ବର୍ଷ ବୟସର ପୁଅଙ୍କ ବିବାହ ନିଜ ଜାତି ଭିତରେହିଁ ହେଉଥାଏ ଓ ବରକନ୍ୟା ବାଛିବା ଦାୟିତ୍ୱ ଗୁରୁଜନ ମାନଙ୍କ ଉପରେ ନ୍ୟସ୍ତ ଥାଏ । ବିଧବା ବିବାହର ପ୍ରଶ୍ନ ଉ ନ ଥିଲା । ଆଜିକାଲି ଭଳି ସେତେବେଳେ ଯୌତୁକ ପ୍ରଥାର ପ୍ରଚଳନ ନ ଥିଲା । ବରଂ ବରପକ୍ଷର ଲୋକେ କନ୍ୟା ପକ୍ଷକୁ ଅର୍ଥ ବା ଦ୍ରବ୍ୟ ଆକାରରେ 'ପଣ' (ଭେଟି) ଦେଉଥିଲେ । ଆଦିବାସୀ ସମାଜରେ ମଧ୍ୟ ଠିକ୍ ଏହି ପ୍ରଥାର ପ୍ରଚଳନ ଥିଲା । ଛାଡ଼ପତ୍ର କଥାକୁ କେହି ଚିନ୍ତା ବି କରୁ ନ ଥିଲେ । ଭାଗ୍ୟକୁ ଆଧାର ସ୍ୱାମୀ-ସ୍ତ୍ରୀ ପରସ୍ପର ସହିତ ମିଳିମିଶି ଚଳି ଯାଉଥିଲେ । ଅଳ୍ପ କେତେକ କ୍ଷେତ୍ରରେ ପୁରୁଷମାନେ ଏକାଧିକ ବିବାହ ମଧ୍ୟ କରୁଥିଲେ ।

## ପରିଧାନ

ଲୁଙ୍ଗି କେହି ପିନ୍ଧୁ ନଥିଲେ । ଧୋତି; ଗାମୁଛା ଥିଲା ସାଧାରଣ ପରିଧାନ । ପିଲାମାନେ ମଧ୍ୟ ଗାମୁଛା ପିନ୍ଧୁଥିଲେ, ନ ହେଲେ ବଡ଼ ହେବାଯାଏ ଲଙ୍ଗଳା ରହୁଥିଲେ । କିଛି ବର୍ଷ ପରେ କଲିକତା ବଜାରରୁ କେତେକ ଲୁଗା ବ୍ୟବସାୟୀ ହାଫ୍ ପେଣ୍ଟ ଓ ସାର୍ଟ ଆଣି

ବନ୍ଦି କରିବା ଫଳରେ ପିଲାମାନେ ସେ ସବୁ ଶିଖିବା ଆରମ୍ଭ କଲେ । ସେହିଭଳି ଗାଁ ଗହଳର ବୁଣାକାରମାନେ ସାଧାରଣତଃ ଧୋତି, ଶାଢ଼ୀ, ଗାମୁଛା ଇତ୍ୟାଦି ବୁଣି ଯୋଗାଉଥିଲେ । ନ ହେଲେ ବ୍ୟବସାୟୀମାନେ ଅନ୍ୟ ସ୍ଥାନରୁ ତନ୍ତବୁଣା ଲୁଗା ଆଣି ବନ୍ଦି କରୁଥିଲେ । ମାତ୍ର ପରେ ମିଲ୍ ଲୁଗା ଆଣି ବ୍ୟବସାୟୀମାନେ ଜଲେଶ୍ୱର ବଜାରରେ ବନ୍ଦି କଲେ । ଏହା ଶସ୍ତା ଓ ପିନ୍ଧିବା ପାଇଁ ମୁଲାୟମ ହେବା ଯୋଗୁଁ କ୍ରମେ ଅଧିକାଂଶ ଲୋକ ସେଇଥିରେ ଅଭ୍ୟସ୍ତ ହୋଇଗଲେ । ଅପର ପକ୍ଷରେ ତନ୍ତୀ କୁଳ ସେମାନଙ୍କର ଜୀବିକା ହରାଇ ଉଚ୍ଛନ୍ନ ହୋଇଗଲେ ।

## ଖାଦ୍ୟ

ସାଧାରଣତଃ ପଖାଳ, ମାଛ ଓ ନେପଥିବା ହେଲା ଏ ଅଞ୍ଚଳ ଲୋକଙ୍କର ମୁଖ୍ୟ ଖାଦ୍ୟ । ପୋଖରୀ, ଖାଲ, ଝରଣା, ଝାଳ ଓ ନଦୀରୁ ପ୍ରଚୁର ପରିମାଣରେ ମାଛ ମିଳେ । ଧୀବର ଗଉଡ ନିର୍ବିଶେଷରେ ସେଥିରୁ ମାଛ ଧରି ମୁଖ୍ୟ ଜୀବିକା କରନ୍ତି । ଅଧିକାଂଶ ଲୋକ ମାଛ ଖାଉ ନ ଥିଲେ । କେତେକ ଛେଳି ମାଂସ ଖାଉଥିଲେ । ସବର୍ଣ୍ଣ ଲୋକମାନେ କୁକୁଡ଼ା ପାଳୁ ନ ଥିଲେ କିମ୍ବା ତାର ମାଂସ ଖାଉ ନ ଥିଲେ। କେହି କୁକୁଡ଼ା ମାଂସ ଖାଉଥିବାର ପ୍ରମାଣ ମିଳିଲେ ତାକୁ ସାମାଜିକ ବାସନ୍ଦ କରଯାଉଥିଲା । ସାମାଜିକ ବାସନ୍ଦର ଅର୍ଥ ହେଲା ତାକୁ ନିଆଁ, ପାଣି, ଧୋବା, ଭଣ୍ଡାରୀ ସବୁ ବନ୍ଦ । ଗାଁର କୌଣସି ସର୍ବ ସାଧାରଣ ଅନୁଷ୍ଠାନରେ ସେ ଭାଗ ନେଇ ପାରିବନାହିଁ କିମ୍ବା ଅନ୍ୟ କେହି ତା ସହିତ କୌଣସି ପ୍ରକାରର ସାମାଜିକ ସମ୍ପର୍କ ରଖିବେନାହିଁ, ଏପରିକି କଥାବାର୍ତ୍ତା ମଧ୍ୟ କରି ପାରିବେନି । ଭୁଲ ସ୍ୱୀକାର କରି ଦଣ୍ଡ ଦେଲେ ଓ ପ୍ରାୟଶ୍ଚିତ୍ତ କଲେ ଯାଇ ତାକୁ ସମାଜରେ ଗ୍ରହଣ କରାଯାଉଥିଲା ।

## ଦେବ ଦେବୀଙ୍କ ପୂଜା ଆରାଧନା

ପ୍ରତ୍ୟେକ ଗାଁରେ ମହାଦେବ ବା କୌଣସି ଦେବୀ ଯଥା- ଖରଖାଇ ବୁଢ଼ୀ, ଜଙ୍ଗଲ ବୁଢ଼ୀ ବା ମଙ୍ଗଳା ବା ଉଭୟଙ୍କର ପୂଜା ଆରାଧନା ହୁଏ । ପ୍ରତିବର୍ଷ ଦୋଳ, ରଜ ଓ ପଇଡା ପକା (ଚଡ଼କ ଯାତ୍ରା) ଆଦି ଉତ୍ସବମାନ ସମସ୍ତଙ୍କ ସହଯୋଗରେ ପାଳିତ ହୁଏ । ତା ଛଡ଼ା ଅନ୍ୟାନ୍ୟ ପର୍ବ ପର୍ବାଣୀ ଯଥା- ଗହ୍ମା, ଦୁର୍ଗାପୂଜା, ନବାନ୍ନ, ପ୍ରଥମାଷ୍ଟମୀ, ମକର ଓ ଅକ୍ଷୟ ତୃତୀୟା ଆଦି ସାଧାରଣତଃ ପ୍ରତି ଗୃହସ୍ଥ ପାଳନ କରୁଥିଲେ । ବର୍ଷକୁ ଥରେ ନିଷ୍ଠସ୍ଥ ମହୋତ୍ସବ ବା ଜଙ୍ଗଲ କରି ପଂକ୍ତି ଭୋଜନ କରାଯାଏ । ଏହାଦ୍ୱାରା ସମସ୍ତଙ୍କ ଭିତରେ ଏକତା ଓ ଭ୍ରାତୃଭାବ ପ୍ରତିଷ୍ଠିତ ହୁଏ ।

## ଧର୍ମ ଧାରଣା

କେବଳ ହାଣ୍ଡିଗଡ଼ ଠାରେ ଖ୍ରୀଷ୍ଟିଆନ ସଂପ୍ରଦାୟର ଲୋକମାନେ ଓ ଅନ୍ୟ ସବୁ ଗାଁରେ ହିନ୍ଦୁ ଧର୍ମର ଲୋକମାନେ ହିଁ ବାସ କରୁଥିଲେ । ସାମୟିକ କେତେକ ଘଟଣାକୁ ବାଦ୍ ଦେଲେ, ଉଭୟ ସମ୍ପ୍ରଦାୟର ଲୋକଙ୍କ ଭିତରେ ବେଶ୍ ଭଲ ସଂପର୍କ ରହିଥିଲା ।

## ମାଦକ ଦ୍ରବ୍ୟର ସେବନ

ମହୁଲି ମଦ ଓ ହାଣ୍ଡିଆ ପିଇବା ସାଧାରଣତଃ ଆଦିବାସୀ ସାମାଜରେ ପ୍ରଚଳିତ ଥିଲା । ବିଭିନ୍ନ ପର୍ବ ପର୍ବାଣୀ ତଥା ସାମାଜିକ ଉତ୍ସବ ମାନଙ୍କରେ ଏହାର ମାତ୍ରାଧିକ ବ୍ୟବହାର ହେଉଥିଲା । କ୍ରମେ କ୍ରମେ ସବର୍ଣ୍ଣ ଲୋକମାନେ ମଧ୍ୟ ଲୁଚାଇ ଛପାଇ ଏହାର ସେବନ କଲେ । ଖୋଲା ଖୋଲି ଏହାର ବ୍ୟବହାରକୁ ଲୋକମାନେ ଘୃଣା କରୁଥିଲେ ଓ ଆବଶ୍ୟକ ହେଲେ ମଦ୍ୟପୀମାନଙ୍କୁ ସାମାଜିକ ବାସନ୍ଦ କରାଯାଉଥିଲା ।

ଅନ୍ୟ ଏକ ମାଦକ ଦ୍ରବ୍ୟର ପ୍ରଚଳନ ପ୍ରବଳ ଭାବରେ ବ୍ୟାପିଗଲା । ତାହା ହେଲା— ଅଫିମ । ଗାଁ ଗହଳର ଅଧିକାଂଶ ବାତରୋଗୀ ପ୍ରଥମେ ଏହାର ସେବନ କଲେ । କାଳକ୍ରମେ ଧନୀ, ଗରିବ ନିର୍ବିଶେଷରେ ଅଧିକାଂଶ ଲୋକ ଏହାର କୁପ୍ରଭାବରେ ପ୍ରଭାବିତ ହେଲେ ! ଗ୍ରାମ୍ୟ ଅର୍ଥନୀତିର ମେରୁଦଣ୍ଡ ଦୁର୍ବଳ ହୋଇଗଲା । ସରକାର ବା ଜମିଦାର ଏ ସବୁର କିଛି ପ୍ରତିକାର ବା ପ୍ରତିରୋଧ କଲେ ନାହିଁ । ଲୋକେ ଯେତେ ନିଶାଗ୍ରସ୍ତ ହେବେ, ବିଦେଶୀ ସରକାରଙ୍କ ପକ୍ଷରୁ ଶାସନ କରିବା ସେତେ ସହଜ ହେବ—ଏଇଭଳି ଏକ ଧାରଣା ବୋଧହୁଏ ସେମାନଙ୍କ ମନରେ ବସା ବାନ୍ଧି ରହିଥିଲା । ହୁଏତ ସେମାନଙ୍କ ପରୋକ୍ଷ ସହାୟତାରେ ଏ ମାଦକ ଦ୍ରବ୍ୟର କାରବାର ମଧ୍ୟ ଚାଲୁଥିଲା । ଚୋରି, ଡକାୟତି ମଧ୍ୟ ବଢ଼ିଲା । ଗାନ୍ଧିଜୀଙ୍କର ମାଦକ ଦ୍ରବ୍ୟ ବ୍ୟବହାର ବିରୋଧୀ ଆନ୍ଦୋଳନ ଯୋଗୁଁ ଏ ଅବସ୍ଥାର ଅନେକ ପରିବର୍ତ୍ତନ ହେଲା ।

## ଜମିଜମା ବ୍ୟବସ୍ଥା ଓ ଜମିଦାର

କୃଷୀର ଜମି ଉପରେ ନାମକୁ ମାତ୍ର ମାଲିକାନା ସାବ୍ୟସ୍ତ ହୋଇଥିଲା । ଜମିଦାର ଇଚ୍ଛା କଲେ ପ୍ରଜାମାନଙ୍କୁ ହଇରାଣ ହରକତ କରୁଥିଲେ । ଜମିର କିଣାବିକି ରେଜିଷ୍ଟ୍ରେସନ ଅଫିସରେ ହେଉଥିଲେ ବି ନାମଜାରି କରୁଥିଲେ ଜମିଦାରଙ୍କ ତରଫରୁ ନାଏବ ମାନେ । ସେମାନେ ଆବଶ୍ୟକ ଫିସ୍ ବାଦ୍ ନିଜପାଇଁ ଲାଞ୍ଚ ନେଉ ଥିଲେ । ସମୟ ସମୟରେ ତାହା ଏତେ ଅଧିକ ହେଉ ଥିଲା ଯେ ତାହା ପରିଠ କରିବା ସାଧାରଣ ପ୍ରଜା ମାନଙ୍କ ପକ୍ଷେ ସାଧ୍ୟାତୀତ ହେଉଥିଲା । ତେଣୁ ନାମଜାରୀ ହୋଇ ନ ପାରି ସାବକ ପ୍ରଜା ନାମରେ ଜମି ରହି ଯାଉଥିଲା ଓ ସେମାନେ ଇଚ୍ଛା କଲେ ନାଏବ ମାନଙ୍କୁ ସନ୍ତୁଷ୍ଟ

କରି ଜମିର ଦଖଲ ମଧ୍ୟ ଗ୍ରୁଡ଼ୁ ନ ଥିଲେ । କୋର୍ଟ କଚେରୀରେ ମୋକଦ୍ଦମା କରି ଜମିର ସ୍ୱତ୍ୱ ସାବ୍ୟସ୍ତ କରିବା କିଛି ସହଜ କଥା ନ ଥିଲା ।

ଫତଆବାଦ ପ୍ରଗଣାର ସମସ୍ତ ଜମିଦାରୀ ସ୍ୱତ୍ୱକୁ ସେତେବେଳେ ୧୬ ଅଣା ଧରା ଯାଉଥିଲା । ସେଥିରୁ "ରାଇବଣିଆ" ଗାଁରେ କଚେରୀ ଘର କରି ବାସ କରୁଥିବା ଜମିଦାରମାନଙ୍କର ସ୍ୱତ୍ୱ ଥିଲା ୭ ଅଣା ୪ ଗଣ୍ଡା । ଏମାନଙ୍କର ସ୍ଥାୟୀ ଘର ଥିଲା କଲିକତାରେ । କେବେ ଓ କିମିତି ସେମାନେ ଓଡ଼ିଶାର ଏ ଅଞ୍ଚଳର ଜମିଦାର ହେଲେ ତାହା କହିବା ସମ୍ଭବ ନୁହେଁ । ହୁଏତ ଇଂରେଜ ସରକାରଙ୍କର "ସୂର୍ଯ୍ୟାସ୍ତ ଆଇନ" ବଳରେ କୌଣସି ଓଡ଼ିଆ ଜମିଦାର ତାଙ୍କର ଜମିଦାରୀ ହରାଇଛନ୍ତି ଓ କଲିକତା ବାସୀ ଏଇ ଜମିଦାରମାନଙ୍କର ପୂର୍ବ ପୁରୁଷମାନେ ତାହାକୁ ନିଲାମରେ ନେଇଛନ୍ତି ।

କଲିକତାରେ ବାସ କରୁଥିବା ମାଲିକ ମାନଙ୍କ ତରଫରୁ ରାଇବଣିଆ ଠାରେ ଜଣେ ସ୍ଥାୟୀ ଭାବରେ ରହି ଜମିଦାରୀର ସମସ୍ତ କଥା ବୁଝୁଥିଲେ । ଅନ୍ୟ ଅଂଶୀଦାରମାନେ ମଧ୍ୟ ତାଙ୍କୁ କ୍ଷମତା ପତ୍ର ଲେଖି ଦେଇଥିଲେ । ଶ୍ରୀ ବିମଳ ମୁଖାର୍ଜି ଏଠାକାର କ୍ଷମତା ପ୍ରାପ୍ତ ମାଲିକ ଥିବାବେଳେ ଜମିଦାରୀ ଉଚ୍ଛେଦ ହୋଇଗଲା । ଏମାନେ ମୁଖ୍ୟତଃ ଶାନ୍ତିପ୍ରିୟ ଥିଲେ । ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରୁ ନ ଥିଲେ । ଅନେକ ସମୟରେ ଖଜଣାରେ ମଧ୍ୟ ଛାଡ଼ ଦେଉଥିଲେ । ଯେବେଳେବେଳେ ଭୋଜନପ୍ରିୟ ଏଇ ଜମିଦାର ମାନେ ରୋହୀ, ଭାକୁଡ଼ ମାଛ ଓ ପାଚିଲା କଦଳୀ ପାଇଲେ ପିଛିଲା ଖଜଣା ମଧ୍ୟ ମାଫି କରି ଦେଉଥିଲେ ।

ପ୍ରଥମେ ଏମାନଙ୍କର ୧୧ ଜଣ ସରୀକ ବା ଅଂଶୀଦାର ଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ୧୮ ଜଣ ଅଂଶୀଦାର ହୋଇଥିଲେ ।

ଏହି ଜମିଦାରୀର ଜଣେ ଅଂଶୀଦାର ଅପୁତ୍ରିକ ହୋଇ ମରିଯିବାରୁ ତାଙ୍କର ଉତ୍ତରାଧିକାରୀ ହିଁ ତାଙ୍କ ଅଂଶ ଜମିଦାରୀକୁ ଠାକୁରାଣୀଙ୍କ ନାମରେ ରଖି ଜଣକୁ ସେବାୟତଦାର ନିଯୁକ୍ତ କରିଥିଲେ । ପ୍ରଥମେ ଗୁରୁଦାସପୁର ଗାଁରେ ଗୋଟିଏ ଓ ପରେ କାଳିଆ ଗାଁରେ ଅନ୍ୟଏକ କଚେରୀ ଘର ହେଲା । ଏମାନେ ଏଠାରେ ନ ରହି କଲିକତାରେ ରହୁଥିଲେ ଓ ତାଙ୍କର ନାଏବ ଓ ଗୁମାସ୍ତା ମାନେ ରହି ଜମିଦାରୀର ସମସ୍ତ କଥା ବୁଝୁଥିଲେ । ଏମାନେ କିଛି ପରିମାଣରେ ଅତ୍ୟାଚାରୀ ଥିଲେ । ପରେ ଏହି ଅଂଶ ଜମିଦାରୀକୁ ରାଇବଣିଆର ମୂଳ ଜମିଦାରମାନେ ଦଖଲ କରି ନେଇଥିଲେ । ତାପରେ ଜମିଦାରୀ ଉଚ୍ଛେଦ ହୋଇଗଲା ।

ରାଇବଣିଆ ଇଲାକାର ମୋଟ ଜମିଦାରୀର ବାକି ୯ଅଣା ୧୭ ଗଣ୍ଡା ଅଂଶର ମାଲିକ ଥିଲେ ଅନ୍ୟ ଜମିଦାରମାନେ । ସେଥି ମଧ୍ୟରୁ ଗୋଟିଏ ଅଂଶ ଥିଲା ୪ ଅଣି । ଏହାର ଦୁଇଜଣ ଅଂଶୀଦାର ଥିଲେ । ଏମାନଙ୍କର କଚେରୀ ଘରଥିଲା କେନ୍ଦୁଖୁଣ୍ଟା ଠାରେ । ଖଜଣା ଆଦାୟ ବ୍ୟତୀତ ଅନ୍ୟ ସମୟରେ କେବଳ ଜଗୁଆଳୀ ବ୍ୟତୀତ ସେଠାରେ ପ୍ରାୟ କେହି ରହୁ ନ ଥିଲେ ।

ଅନ୍ୟ ଗୁରଅଣା ଜମିଦାରୀ ଅଂଶର ମାଲିକଙ୍କର କଚେରୀ ଘର ଥିଲା ବରଡ଼ହା ଗଡ଼ ଗାଆଁରେ । ଏମାନେ ଅତି ମାତ୍ରାରେ ଅତ୍ୟାଚାରୀ ଥିଲେ । ଖଜଣା ଅନାଦାୟ ହେଲେ ବା ଜମିଦାରଙ୍କର ଅବାଧ୍ୟ ହେଲେ ସେମାନେ ପ୍ରଜାମାନଙ୍କୁ ଗୋରୁ ଗାଈ ଭଳି ପଦାରେ ବାନ୍ଧି

ପକାଇ ପିଟୁଥିଲେ । ପ୍ରଜାଙ୍କର ସୁବିଧା, ଅସୁବିଧା ଏବଂ ବଢ଼ି ମରୁଡ଼ିରେ ହେଉଥିବା କ୍ଷୟକ୍ଷତି କଥା ନ ବୁଝି ଜବରଦସ୍ତ ଖଜଣା ଆଦାୟ କରୁଥିଲେ । ପୁଣି ସେମାନେ ଥିଲେ ଅତି ମାତ୍ରାରେ ପ୍ରଭୁଭକ୍ତ । ଅର୍ଥାତ୍ ଇଂରେଜ ସରକାରଙ୍କର ଆଜ୍ଞାବହ । ସେମାନଙ୍କ ଇଲାକାରେ ଯଦି କେହି ସରକାର ବିରୋଧୀ କାର୍ଯ୍ୟକଳାପରେ ଲିପ୍ତ ରହୁଥିବାର ଖବର ଜମିଦାରଙ୍କୁ ମିଳୁଥିଲା, ତେବେ ସେମାନେ ଉକ୍ତ ପ୍ରଜାଙ୍କୁ ସାଂଘାତିକ ଦଣ୍ଡାଦେଶ ଦେଉଥିଲେ । ଜମିଦାରମାନଙ୍କର ଇଚ୍ଛାକୁ କାର୍ଯ୍ୟକାରୀ କରିବାକୁ ଯାଇ ପାଇକମାନେ ପ୍ରଜାମାନଙ୍କୁ ଭୟଭୀତ କରି ସେମାନଙ୍କର ମନ୍ଦ ପ୍ରବୃତ୍ତିକୁ କାର୍ଯ୍ୟକାରୀ କରୁଥିଲେ । ମାତ୍ର ସେମାନଙ୍କର ଆଦ୍ୟ ବଂଶଧରମାନେ ଏଭଳି ଅତ୍ୟାଚାରୀ ନ ଥିଲେ ବୋଲି ଶୁଣାଯାଏ ।

ଅବଶିଷ୍ଟ ଏକଅଣା ୧୭ ଗଣ୍ଡା ଅଂଶର ମାଲିକ ଥିଲେ ଲକ୍ଷ୍ମଣନାଥର ରାୟ ମହାଶୟ ବଂଶ । ଏମାନଙ୍କର ଅଲଗା କଚେରୀ ଘର ଜମିଦାରୀ ଇଲାକାରେ ନ ଥିଲା । ସିଧାସଳଖ ସେମାନଙ୍କର ବାସସ୍ଥାନ ଲକ୍ଷ୍ମଣନାଥରୁ ଏମାନେ ଜମିଦାରୀ କଥା ବୁଝା ସୁଝା କରୁଥିଲେ । ଏମାନଙ୍କର ଅନ୍ୟତ୍ର ବିଶେଷତଃ ଜଳେଶ୍ୱର, ବସ୍ତା ଓ ବାଲିଆପାଳ ଅଞ୍ଚଳରେ ବିଶାଳ ଜମିଦାରୀ ରହିଥିଲା । ଏମାନେ ମଧ୍ୟ ଅତ୍ୟାଚାରୀ ଥିଲେ । ମାତ୍ର ତାର ମାତ୍ରା କମ୍ ଥିଲା । ବେଠି ଓ ବେଗାରି ପାଇଁ ପ୍ରଜାମାନଙ୍କ ଉପରେ ଜୁଲୁମ ହେଉଥାଏ । ଲକ୍ଷ୍ମଣନାଥର ଜମିଦାରମାନେ ପ୍ରତିବର୍ଷ ଦୁର୍ଗାପୂଜା ଓ କାଳୀପୂଜା ଇତ୍ୟାଦି କରୁଥିଲେ ଓ ସେଥିପାଇଁ ପ୍ରଜାମାନଙ୍କ ଠାରୁ ଚନ୍ଦା ଓ ବୋଦା ଆଦାୟ କରୁଥିଲେ । ପୂଜା, ପାର୍ବଣ ଏବଂ ବିବାହ ଆଦି କର୍ମରେ ପ୍ରଜାମାନଙ୍କୁ ବେଠି ଓ ବେଗାରି ମଧ୍ୟ ଖଟିବାକୁ ପଡ଼ୁଥିଲା ।

ଏ ଅଞ୍ଚଳର ଉନ୍ନତି ପାଇଁ ଜମିଦାରମାନେ କାଣି କଉଡ଼ିଟାଏ ଖର୍ଚ୍ଚ କରି ନ ଥିଲେ ବରଂ ଏମାନଙ୍କ ଦୌରାତ୍ମ୍ୟରେ ପ୍ରଜାକୁଳ ହନ୍ତସନ୍ତ ହେଉଥିଲେ ଓ କେତେକ ପରିବାର ଉଚ୍ଛନ୍ନ ହୋଇ ଯାଇଥିଲେ । ଏତଦ୍ ବ୍ୟତୀତ ଫତ୍ତଆବାଦ ପ୍ରଗଣାର ଦକ୍ଷିଣାଂଶରେ ଅଲଲପୁର ସ୍ଥିତ ଚୌଧୁରୀ ବଂଶର ଓ ଅନ୍ୟମାନଙ୍କର କିଛି ଜମିଦାରୀ ରହିଥିଲା ।

ଏହିଭଳି ଭାବରେ ସମଗ୍ର ଫତ୍ତଆବାଦ ଇଲାକାରେ ଅନେକ ଜମିଦାର ରହିଥିଲେ । ସେମାନଙ୍କର ସ୍ୱତନ୍ତ୍ର ଖଜଣା ହାର ଥିଲା ଓ ବ୍ୟବହାରରେ ମଧ୍ୟ ଯଥେଷ୍ଟ ପାର୍ଥକ୍ୟ ରହିଥିଲା । ଯେମିତିକି ରାଇବଣିଆ ସ୍ଥିତ 'ସାତଣି' ଜମିଦାରଙ୍କର ଏକର ପ୍ରତି ଖଜଣା ହାର ଯଥେଷ୍ଟ ବେଶୀ ଥିଲାବେଳେ ଲକ୍ଷ୍ମଣନାଥର 'ଗୃରଣି' ଜମିଦାରଙ୍କର ଖଜଣା ହାର କମ୍ ଥିଲା । ସାତଣି ଜମିଦାରମାନେ ପ୍ରତ୍ୟେକ ଗାଁରେ ଥିବା ମହାଦେବ ଓ ଶ୍ରୀଜଗନ୍ନାଥଙ୍କ ପୂଜା ପାଇଁ ନିୟମିତ ସାହାଯ୍ୟ କରୁଥିଲାବେଳେ ଅନ୍ୟ ଜମିଦାରମାନେ କିଛି ସାହାଯ୍ୟ ଦେଉ ନ ଥିଲେ । ସାତଣି ଜମିଦାରମାନେ ପୂଜା ପାର୍ବଣରେ ବେଠି, ବେଗାରି ଆଦାୟ କରୁ ନ ଥିଲେ କମ୍ବା ଖଜଣା ଆଦାୟରେ ସେମିତି ଜୁଲୁମ କରୁ ନ ଥିଲେ, ମାତ୍ର ଅନ୍ୟ ଜମିଦାରମାନଙ୍କର ଅତ୍ୟାଚାର ମାତ୍ରାତିରିକ୍ତ ଥିଲା ।

କିନ୍ତୁ ସବୁ ଜମିଦାରଙ୍କର କର୍ମଚାରୀମାନେ କମ୍ ବେଶୀ ଲାଞ୍ଚ ନେଉଥିଲେ, ଜମିବାଡ଼ି ନାମଜାରିରେ ହେରଫେର କରୁଥିଲେ ଯାହା ଫଳରେ କି ପ୍ରଜାମାନେ ଭୀଷଣ ଅସୁବିଧାରେ ପଡ଼ୁଥିଲେ । ସେମାନେ ଇଂରେଜ ସରକାରର ଅନୁଗତ ଓ ପକ୍ଷପାତି ଥିଲେ । ଏ ଅଞ୍ଚଳରେ

ଚାଲିଥିବା ସ୍ୱାଧୀନତା ଆନ୍ଦୋଳନ ସଂକ୍ରାନ୍ତୀୟ ସମସ୍ତ ବିବରଣୀ ଇଂରେଜ ସରକାରଙ୍କୁ ସେମାନେ ଅତି ବିଶ୍ୱସ୍ତତାର ସହିତ ଯୋଗାଇ ଦେଉଥିଲେ । ଏମାନଙ୍କର ଶାସନ ବ୍ୟବସ୍ଥା ନିମ୍ନମତେ ଥିଲା ।

ଜମିଦାରୀ ପ୍ରତ୍ୟକ୍ଷ ଭାବରେ ବୁଝିବା ପାଇଁ ଜଣେ କ୍ଷମତା ପ୍ରାପ୍ତ ମାଲିକ ରହୁଥିଲେ । ତାଙ୍କ ତଳେ ନାଏବ ଓ ନାଏବଙ୍କ ତଳେ 'ପ୍ରଧାନ' ମାନେ ପ୍ରତି ଗାଁରେ ରହୁଥିଲେ । ପ୍ରତି ପ୍ରଧାନଙ୍କ ପାଖରେ ଜଣେ ବା ଅଧିକ 'ପାଇକ' ବା 'ଗୁନିଆଳ' ଥିଲେ । ସେହିଭଳି କଚେରୀ ଘରଠାରେ ଜମିଦାରଙ୍କର ସ୍ୱତନ୍ତ୍ର 'ବରକନ୍ଦାଜ' ଓ ପାଇକମାନେ ରହୁଥିଲେ । ଏହି ପାଇକ ଓ ବରକନ୍ଦାଜମାନେ ପୋଲିସ ଭଳି କାମକରି ଜମିଦାରଙ୍କର ସହାୟତା କରୁଥିଲେ । ସେମାନେ କମରରେ ପେଟି ଭିଡ଼ୁଥିଲେ, ହାତରେ ବାଡ଼ିବା ଧରୁଥିଲେ । ଗ୍ରାମବାସୀମାନେ ଏମାନଙ୍କର ନାଁ ଓ ଚେହେରାକୁ ଦେଖି ଭୟ ପାଉଥିଲେ । ଏମାନେ ନିଷ୍କର ପାଇକାଳି ଜମି ଭୋଗ କରୁଥିଲେ । ନାଏବ ଓ ପ୍ରଧାନମାନେ ଅର୍ଥ ଆକାରରେ ଦରମା ପାଉଥିଲେ ।

ଜମିଦାରମାନଙ୍କର ନିଜର ଚାଷ ଜମି (ନିଜଚାଷ) ମଧ୍ୟ ରହିଥିଲା । ଏଗୁଡ଼ିକ ଖଜଣା ବିହୀନ ଜମିଥିଲା । ଚାଷୀମାନେ ଏ ଜମିକୁ 'ସଞ୍ଜା' ସୂତ୍ରରେ ଚାଷ କରୁଥିଲେ ।

ଜଣେ ଜଣେ ପ୍ରଜାଙ୍କର ବିଭିନ୍ନ ଜମିଦାରୀରେ ଜମି ରହିଥିଲା । ସେମାନଙ୍କ ଭିତରୁ ନିରୀହ, ସରଳ ବା ଜମିଦାରଙ୍କର ଇଚ୍ଛା ପୂରଣରେ ଅକ୍ଷମପ୍ରଜାମାନେ ବେଶୀ ହଇରାଣ ହରକତ ହେଉଥିଲେ । କୌଣସି

ସମୟରେ ଜମିଦାର-ଜମିଦାରଙ୍କ ଭିତରେ ଗୋଳମାଳ ଲାଗି ଗଲେ, ପ୍ରଜାମାନେ ମଧ୍ୟ ତାର ଶିକାର ହେଉଥିଲେ ।

ଏ ଅଞ୍ଚଳରେ ଘନ ଜଙ୍ଗଲମାନ ରହିଥିଲା । ସେଗୁଡ଼ିକ ବର୍ଷକୁ ଥରେ ନିଲାମ ଦିଆ ଯାଉଥିଲା । ନିଲାମ ହେବାପରେ ଇଜରାଦାରମାନେ ଜଙ୍ଗଲରୁ ଗଛ କାଟିବାର ଅନୁମତି ଦେଉଥିଲେ ଓ ବିନିମୟରେ ପାଉଣା ନେଉଥିଲେ । ମାତ୍ର ଏ ଅଞ୍ଚଳରେ ବସବାସ କରୁଥିବା ସରଳ ଆଦିବାସୀ, ହରିଜନ ଓ ଗରିବ ଶ୍ରେଣୀର ଲୋକେ ମୂଲ୍ୟହୀନ ଗଛପତ୍ର, ଶୁଖିଲା ଗଛର ଡାଳ କାଟି ଆଖ ପାଖ ଗାଁ ଓ ଜଳେଶ୍ୱର ତଥା ଦାନ୍ତନ ବଜାରରେ ବିକ୍ରି କରି ଜୀବିକା ନିର୍ବାହ କରୁଥିଲେ । ସାଧାରଣ ଲୋକେ ଘର ତିଆରି ଓ ଛଟର ପାଇଁ ଆବଶ୍ୟକୀୟ ଉପକରଣ ତଥା ଜାଳେଣୀକାଠ ଏ ଜଙ୍ଗଲ ମାନଙ୍କରୁ ସଂଗ୍ରହ କରୁଥିଲେ । ସେହିଭଳି ଜଙ୍ଗଲ ଜାତ ମହୁ, ମହୁଲ, କୁସୁମ, ଟସର ଓ ଝୁଣା ଓ ବିଭିନ୍ନ ପ୍ରକାରର ଫାଟଲ କୋଳମାନ ସଂଗ୍ରହ କରି ବିକ୍ରି କରିବା ଅତି ସାଧାରଣ କଥା ଥିଲା । ଏଥିରେ ଭୂମିହୀନ ଗରିବ ସ୍ତ୍ରୀ ଓ ପୁରୁଷମାନେ କାମ ପାଉଥିଲେ ଓ ଦି ପଇସା ରୋଜଗାର କରି ପାରୁଥିଲେ ।

ମାତ୍ର ଜମିଦାର ଓ ଜଙ୍ଗଲ ଠିକା ନେଇଥିବା ଲୋକ ଓ ସେମାନଙ୍କର କର୍ମଚାରୀମାନେ ଏଇ ଶ୍ରେଣୀର ଲୋକମାନଙ୍କୁ ନାନା ଭାବେ ହଇରାଣ ହରକତ କରିବାରୁ ଅସନ୍ତୋଷର ନିଆଁ ଜୁହୁଳିବାରେ ଲାଗିଲା ।

## ମହାଜନ ଓ ମହାଜନୀ କାରବାର

ଜମିଦାର ମାନଙ୍କଠାରୁ ମହାଜନମାନଙ୍କର ଅତ୍ୟାଚାର ବଳି ଯାଉଥିଲା । ପ୍ରତି ଗାଁରେ ବା ଦୁଇତିନିଖଣ୍ଡ ଗାଁରେ ଜଣେ, ଦୁଇଜଣ ମହାଜନ ଥିଲେ । ଏମାନେ ମୁଖ୍ୟତଃ ଧାନ ଓ ଟଙ୍କାର କାରବାର

କରୁଥିଲେ । ଭାଦ୍ରବ, ଆଶ୍ୱିନ ଏପରିକି କାର୍ତ୍ତିକ ମାସରେ ଧାନ ବା ଟଙ୍କା କରଜ ଦେଇ ମାଘ ଓ ଫଗୁଣ ମାସରେ ପୂର୍ବ ବର୍ଷକର ସୁଧ ସହ ମୂଳ ଆଦାୟ କରୁଥିଲେ । ସୁଧ ସାଧାରଣତଃ ଶହକଡ଼ାରୁ ଭାଗେ ବା ୨୪% ଥିଲା । ଜରୁରୀ ପରିସ୍ଥିତିରେ ୩୫%ରୁ ୫୦% ଯାଏ ହେଉଥିଲା । ପୁଣି ଜମିବାଡ଼ି ବନ୍ଧକ କବଲା ବା ଜାୟ ବନ୍ଧକ ବା ସର୍ତ୍ତି କବଲା କରି ଦେବାକୁ ହେଉଥିଲା । ଖାତକ ନିଜଖର୍ଚ୍ଚରେ ମହାଜନକୁ ଜମି ବନ୍ଧକ ଦେବ, ପୁଣି ମହାଜନ ଠାରୁ ଫେରାଇ ଆଣିବ । କେତେକ କ୍ଷେତ୍ରରେ ଉଭୟ ହେଣ୍ଡନୋଟ (HandNote) ଓ ଜମି ବନ୍ଧକ ଦେବାକୁ ପଡୁଥିଲା ପୁଣି ବାପ ଓ ପୁଅ ବା ଭାଇ-ଭାଇ ଉଭୟଙ୍କୁ ମଧ୍ୟ ହେଣ୍ଡନୋଟ ଲେଖି ଦେବାକୁ ପଡୁଥିଲା ଋଣ ଆଣିବାର ତାରିଖ ହେଣ୍ଡନୋଟ୍‌ରେ କିଛି ଉଲ୍ଲେଖ ରହୁ ନଥିଲା । ତେଣୁ ମହାଜନ ଇଚ୍ଛାକରି ପିଛିଲା ତାରିଖ ପକାଇ ହେଣ୍ଡନୋଟ ତମାଦି ହୋଇଯିବାର ଆଳ ଦେଖାଇ କୋର୍ଟରେ ନାଲିସ କରୁଥିଲେ । ସହଜରେ ଡିଗ୍ରୀ ମଧ୍ୟ ଆଣି ପାରୁଥିଲେ । ଅନେକ କ୍ଷେତ୍ରରେ ମୋକଦ୍ଦମାର ନୋଟିସ ମଧ୍ୟ ଖାତକ ପାଇ ପାରୁ ନଥିଲେ । ପୁଣି ମଳ ମୁଣ୍ଡିଆ ଲୋକେ ମୋକଦ୍ଦମା ଲଢ଼ିବା କିଛି ସହଜ କଥା ନଥିଲା । ଖୁବ୍ ବେଶୀରେ ଗାଁ ଟାଉଟର ମାନଙ୍କୁ ଧରି ମୋକଦ୍ଦମା ଲଢ଼ିବାକୁ ପଡୁଥାଏ । ଏମାନେ କିଛି ସାଧାରଣ ଲୋକ ନଥିଲେ- ଶୁଖିଲା କାଠରୁ ପାଣି ବାହାର କରି ପାରୁଥିଲେ ସେମାନେ ।

ଏ ଅବସ୍ଥାରେ ପ୍ରଜାମାନଙ୍କର ସାହା ଭରସା କେବଳ ଭଗବାନଙ୍କ ଛଡ଼ା ଆଉ କେହି ନଥିଲେ । ସାଧାରଣ ଲୋକ ମାନଙ୍କ ଭିତରେ ଅସନ୍ତୋଷ କୁହୁଳିବାରେ ଲାଗିଲା । ସତରେ

ସତରେ କ'ଣ ଏହାର କଛି ପ୍ରତିକାର ନାହିଁ ? କେହି କଣ ସେମାନଙ୍କୁ ସାହାଯ୍ୟ କରିବେନି ?

ମୋଟ ଉପରେ କହିବାକୁ ଗଲେ ଜମିଦାରମାନଙ୍କର ରେକର୍ଡ଼ ଘର ଓ ଖଜଣା ଆଦାୟ କରିବାରେ ନାନା ପ୍ରକାରର ପାତର ଅନ୍ତର ଓ ଗୋଳମାଳିଆ ନୀତି ଓ ପ୍ରଜାମାନଙ୍କୁ ଶୋଷଣ କରିବା ତଥା ନିଜେ ପ୍ରଜାମାନଙ୍କର ସୁଖ ଦୁଃଖ ନ ବୁଝି ନାଏବ, ଗୁମାସ୍ତା ଓ ପ୍ରଧାନ ମାନଙ୍କର ପରାମର୍ଶ ଉପରେ ନିର୍ଭର କରି କାର୍ଯ୍ୟ କରିବା ତଥା ବନ୍ୟା, ବାତ୍ୟା ବା ମରୁଡ଼ି ବେଳେ ଖଜଣା ଛାଡ଼ ନ କରିବା ବା ନ କମାଇବା, ଆବଶ୍ୟକ ପାଉଣା ନେଇ ମଧ୍ୟ ନାମଜାରି ନ କରିବା ଓ ଖଜଣା ବାକି ଆଳରେ ପ୍ରଜାଙ୍କ ଉପରେ ଅତ୍ୟାଚାର କରିବା ଓ ସାମାନ୍ୟ କଥାରେ ଚକ୍ରାନ୍ତ କରି ସେମାନଙ୍କ ଜମିବାଡ଼ି ନିଲାମ କରିବା ଆଦି କାର୍ଯ୍ୟ ଚାଷୀମାନଙ୍କର ଅସନ୍ତୋଷର ମୁଖ୍ୟ କାରଣ ଥିଲା। ଦ୍ୱିତୀୟତଃ ଜଙ୍ଗଲ ଜାତ ଦ୍ରବ୍ୟ ଉପରେ ନିର୍ଭର କରି ନିଜର ଜୀବନ ଓ ଜୀବିକା ନିର୍ବାହ କରୁଥିବା ଭୂମିହୀନ ଓ କ୍ଷୁଦ୍ର ବା ନାମମାତ୍ର ସାଧାରଣ ବା ହରିଜନ, ଆଦିବାସୀ ଚାଷୀ ଓ ସାଧାରଣ ଲୋକମାନଙ୍କୁ ଜମିଦାର ଓ ସରକାରୀ କର୍ମଚାରୀମାନେ ହଇରାଣ ହରକତ କରିବା ଏବଂ ତୃତୀୟତଃ ମହାଜନମାନଙ୍କର ସର୍ବଗ୍ରାସୀ କ୍ଷୁଧା ଚାଷୀମାନଙ୍କ ଅସନ୍ତୋଷ ବୃଦ୍ଧିରେ ଓ ଜନ ଆନ୍ଦୋଳନ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାରେ ସାହାଯ୍ୟ କଲା। ଶେଷବେଳକୁ ପରିସ୍ଥିତି ବିସ୍ଫୋରଣ ମୁଖୀ ହୋଇ ରହିଥାଏ।



## ପ୍ରତିପଦର ଜୋଛନା

ଏ ଭଳି ଜନ ଅସନ୍ତୋଷର ବାରୁଦ ଗଦାରେ ଅଗ୍ନି ସଂଯୋଗ କରି ତାହାକୁ ବିସ୍ଫୋରଣ ଘଟାଇବାରେ ସହାୟତା କଲେ ତତ୍‌କାଳୀନ ବାଙ୍ଗୁଲୀ ଚମାରଗାଁର କୃଷ୍ଣ ପ୍ରସାଦ ଜେନା । ସତ୍ୟେନ୍ଦ୍ର ନାଥ ଷଡ଼ଙ୍ଗୀ ଏ କାମରେ ତାଙ୍କର ସହାୟତା କଲେ । ୧୯୧୯ ମସିହାରୁ ୧୯୨୧ ମସିହା ମଧ୍ୟରେ ଏକ 'କୃଷକ ସଙ୍ଘ' ଚମାରଗାଁ ଠାରେ ଜନ୍ମ ନେଲା । ଏତେବେଳେ ଆଉ ଅପେକ୍ଷା କରିବା ପାଇଁ ସମୟ ନ ଥିଲା । କୃଷକ ସଙ୍ଘର ସିଦ୍ଧାନ୍ତ ଅନୁସାରେ ଗାଁକୁ ଗାଁ ଖଜଣା ବନ୍ଦ ହେଲା । ଜଙ୍ଗଲ ଜାତ ଦ୍ରବ୍ୟର ପ୍ରବଭଳ ଅବାଧ ବ୍ୟବହାର ପାଇଁ ଦାବୀ ବଢ଼ି ଚାଲିଲା । ମହାଜନମାନଙ୍କର ଶୋଷଣ ବିରୁଦ୍ଧରେ ଜନ ଆନ୍ଦୋଳନ ତୀବ୍ର ହୋଇ ଉଠିଲା । କେବଳ ସେତିକି ନୁହେଁ, ଜମିଦାରମାନେ ଜବରଦସ୍ତ ଆଦାୟ କରୁଥିବା ବେଠି ଓ ବେଗାରି ଦେବା ମଧ୍ୟ ଲୋକେ ବନ୍ଦ କରିଦେଲେ ।

ଏଣେ ଜମିଦାରଙ୍କର ଅତ୍ୟାଚାର ମଧ୍ୟ ବଢ଼ି ଚାଲିଲା । କୌଣସି ପ୍ରକାରେ ଖୁଣ୍ଟି ଓ ମୂଲ୍ୟହୀନ କାଠ (ଅକାଠୁଆ) ତଥା ଝୁଣା, ମହୁ, ମହୁଲ, କୁସୁମ ଓ ଚାରୋଳି କୋଳି ଆଦି ଅବାଧରେ ସଂଗ୍ରହ କରିବା ମଧ୍ୟ ଜମିଦାର ନିଷେଧ କଲେ ଓ ସଂଗ୍ରହକାରୀଙ୍କୁ କଠିନ ଶାରୀରିକ ଓ ଦୈହିକ ଦଣ୍ଡ ଦେଲେ । ମାତ୍ର ଠିକ୍ ଭାବରେ ଚଳାଇ ନ ପାରିବାରୁ ଏ ଆନ୍ଦୋଳନ ବେଶୀ ଦିନ ଚାଲି ପାରିଲାନି । ତଥାପି ଲୋକମାନଙ୍କ ଭିତରେ ସଚେତନତା ସୃଷ୍ଟି ହେଲା ଓ ଯୁଗ ଯୁଗର ଜମାଟ ବନ୍ଧା ଭୟଗ୍ରସ୍ତ ମାନସିକତା କିଛିଟା ପରିମାଣରେ ଦୂର ହେଲା ।



# ଅହିଂସା ଅନଳ ଜଳିଲା ଦେଶେ

୧୯୧୯ ମସିହାର ଏପ୍ରିଲ ୧୩ ତାରିଖ ପବିତ୍ର ମହା ବିଷୁବ ସଂକ୍ରାନ୍ତି। ସେଦିନଟି କେବଳ ପଞ୍ଜାବ ନୁହେଁ, ସମଗ୍ର ଭାରତବର୍ଷ ପାଇଁ ଏକ ଅଶୁଭର ବାର୍ତ୍ତାବହ ହୋଇ ଆସିଥିଲା। ସମଗ୍ର ଦେଶରେ ଏହି ଦିନଟି ମହା ଆନନ୍ଦ ଉଲ୍ଲାସରେ ପାଳିତ ହେଉଥିବା ବେଳେ ଏକ ନାରକୀୟ ଘଟଣା ଘଟିଲା ପଞ୍ଜାବର ଜାଲିଆନା ବାଗ୍ ସହରରେ। ରାଉଲ୍‌ଟ ଆଇନ ବିରୁଦ୍ଧରେ ଏକ ପ୍ରତିବାଦ ସଭା ତିନିପାଖ ପାଚେରୀ ଘେରା ସହରର ଗୋଟିଏ ସ୍ଥାନରେ ହେଉଥିବା ବେଳେ ଏକମାତ୍ର ପ୍ରବେଶ ପଥକୁ ଅବରୋଧ କରି ଜେନେରାଲ ଡାୟାର ଗୁଳି ଚାଳନା କରି ଶହ ଶହ ଲୋକଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟା କଲେ। ଜଣା ଯାଇଛି ଯେ ସୈନ୍ୟମାନେ ୧୬ଶହ ଥର ଗୁଳି ଚାଳନା କରିଥିଲେ। ସରକାରୀ ହିସାବ ଅନୁସାରେ ୪ଶହ ଜଣ ମୃତ୍ୟୁ ବରଣ କରିଥିଲେ ଓ ୨ ହଜାର ଲୋକ ଆହତ ହୋଇଥିଲେ। ମାତ୍ର ବାସ୍ତବ ସ୍ଥିତି କିନ୍ତୁ ଏହାଠାରୁ ଆହୁରି ଭୟଙ୍କର ଥିଲା। ସମଗ୍ର ଭାରତ ବର୍ଷ ଏ ନିର୍ମମ ଓ ନୃଶଂସ ବ୍ୟବହାରର ପ୍ରତିବାଦରେ ମୁଖରିତ ହୋଇ ଉଠିଲା।

ଭାରତ ବର୍ଷର ଘଟଣାବଳୀ ଠାରୁ ଓଡ଼ିଶା ଅଲଗା ହୋଇ ରହିପାରି ନ ଥିଲା। ଭଗୀରଥ ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଆଣିବା ଭଳି ପଣ୍ଡିତ ଗୋପବନ୍ଧୁ ଦାସ କଂଗ୍ରେସ ସଂଗଠନ ଓ ମହାତ୍ମା ଗାନ୍ଧୀଙ୍କ ଆନ୍ଦୋଳନର ବାର୍ତ୍ତା ଓଡ଼ିଶାକୁ ବୁହାଇ ଆଣିଲେ। ତା ୨୪-୧-୧୯୨୧ ରିଖ ଦିନ କଟକ ନିକଟସ୍ଥ କାଠଯୋଡ଼ି ନଦୀ ବାଲିରେ ଏକ ବିରାଟ ସାଧାରଣ ସଭାରେ ଗୁରୁ ଓ ଜନ ସାଧାରଣଙ୍କୁ ଦେଶର ତତ୍କାଳୀନ ପରିସ୍ଥିତି ବୁଝାଇ ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନରେ ଯୋଗଦେଇ ଦେଶର ମୁକ୍ତି ସଂଗ୍ରାମକୁ ଆଗେଇ ନେବା ନିମନ୍ତେ ସେ ଦୃପ୍ତ ଆହ୍ୱାନ ଦେଲେ। ଏହାର ଅସୀମ ଓ ସୁଦୂର ପ୍ରସାରୀ ପ୍ରଭାବ ପଡ଼ିଲା ଶିକ୍ଷିତ

ସଚେତନ ଓ ଶ୍ରମ ସମାଜ ଉପରେ । ଫଳରେ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, କରୁଣାକର ପାଣିଗ୍ରାହୀ, ନିତ୍ୟାନନ୍ଦ କାନନଗୋ ଓ ନାରାୟଣ ବୀରବର ସାମନ୍ତ ପ୍ରଭୃତି ସ୍କୁଲ, କଲେଜ, ଶିକ୍ଷା ତ୍ୟାଗ କରି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ବିଦେଶୀ ଜିନିଷ ବର୍ଜନ କରିବା, ନିଜେ ସୂତାକାଟି ଲୁଗା ବୁଣିବା, ମାଦକ ଦ୍ରବ୍ୟ କିଣି ଓ ସେବନ ବନ୍ଦ କରିବା ଉଦ୍ଦେଶ୍ୟରେ ସେହିସବୁ ଦୋକାନ ଆଗରେ ପିକେଟିଂ କରିବା ତଥା କଂଗ୍ରେସର ବାର୍ତ୍ତା ପୁରପଲ୍ଲୀ, ସହର-ନଗରରେ ପ୍ରଚାର କରିବା, ସରକାରୀ ଚାକିରୀ ଛାଡ଼ିବା ଓ କୋର୍ଟ କଚେରୀ ତଥା ସ୍କୁଲ-କଲେଜ ବର୍ଜନ କରିବା ଆଦି ବାର୍ତ୍ତା ପ୍ରଚାରରେ କର୍ମୀମାନେ ବ୍ୟସ୍ତ ରହିଲେ ।

ସେତେବେଳକୁ ଗାନ୍ଧିଜୀ ଘୋଷଣା କରିଥାଆନ୍ତି ଯେ ୧୯୨୧ ଜୁନ ମାସ ଭିତରେ କୋଟିଏ କଂଗ୍ରେସ ସଭ୍ୟ ସଂଗୃହୀତ ହେଲେ ଓ ଦେଶରେ କୋଟିଏ ଚରଖା ଚାଲିଲେ ତଥା 'ତିଳକ ସ୍ୱରାଜ୍ୟ ପାଣ୍ଠି' ପାଇଁ କୋଟିଏ ଟଙ୍କା ସଂଗୃହୀତ ହେଲେ ସେ ବର୍ଷକ ଭିତରେ ଦେଶକୁ ସ୍ୱରାଜ୍ୟ ଆଣିଦେଇ ପାରିବେ ।

୧୯୨୧ ମାର୍ଚ୍ଚ ମାସରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସଭାପତିତ୍ୱରେ ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟି ଗଠିତ ହେଲା । ଡାକ୍ତର ଏକ୍ରାମ ରସୁଲ ଉପ ସଭାପତି ଓ ଭାଗିରଥୀ ମହାପାତ୍ର ସଂପାଦକ ହେଲେ । ତତ୍କାଳୀନ ବିହାର- ଓଡ଼ିଶା ପ୍ରଦେଶର ଓଡିଶା ଡିଭିଜନରେ ଥିବା ସମସ୍ତ ଜିଲ୍ଲା ବ୍ୟତୀତ ବଙ୍ଗଳାର ମେଦିନୀପୁର ଓ ବିହାର- ଓଡ଼ିଶା ପ୍ରଦେଶର ସିଂହଭୂମି ଜିଲ୍ଲାକୁ ମଧ୍ୟ ଏହି କଂଗ୍ରେସ କମିଟିର ଅନ୍ତର୍ଭୁକ୍ତ କରାଗଲା । ବିଭିନ୍ନ ଜିଲ୍ଲାରେ ଜିଲ୍ଲା କମିଟି ଓ

ଥାନା କମିଟିମାନ ଗଠିତ ହେଲା । ବାଲେଶ୍ୱର ଜିଲାର ଦାୟିତ୍ୱରେ ରହିଲେ ଶ୍ରୀ ହରେକୃଷ୍ଣ ମହତାବ ।

୧୯୨୧ ମସିହା ଏପ୍ରିଲ ୬ ତାରିଖରେ ଶ୍ରୀ ମହତାବ, କରୁଣାକର ପାଣିଗ୍ରାହୀ, କୃଷ୍ଣ ପ୍ରସାଦ ମହାପାତ୍ର ଓ ଭୈରବ ଚନ୍ଦ୍ର ମହତାବଙ୍କ ସାଥୀରେ ଆସି ବାଲେଶ୍ୱରରେ ପହଞ୍ଚି ଦେଖିଲେ ଯେ ଏପ୍ରିଲ ୬ ତାରିଖରୁ ୧୩ ତାରିଖ ଯାଏ ସେଠାରେ "ଜାତୀୟ ସପ୍ତାହ" ପାଳନ ଉପଲକ୍ଷେ ହରତାଳ ଚାଲିଛି— ରାଉଲଟ୍ ଆଇନ ଓ ଜାଲିଆନା ବାଗ୍ ଗୁଳିକାଣ୍ଡର ପ୍ରତିବାଦରେ ।

ବାଲେଶ୍ୱର ଜିଲା କଂଗ୍ରେସ କମିଟି ଗଠିତ ହେଲା । ସଭାପତି ଓ ସମ୍ପାଦକ ହେଲେ ଯଥାକ୍ରମେ ବିପିନ୍ ବିହାରୀ ଦାସ ଓ ହରେକୃଷ୍ଣ ମହତାବ । ଅନ୍ୟମାନେ ଜିଲା କଂଗ୍ରେସ ଅଫିସର ନାମ 'ସ୍ୱରାଜ୍ୟ ଆଶ୍ରମ' ରଖିବାକୁ ଚାହୁଁଥିଲେ ମଧ୍ୟ ଶ୍ରୀ ମହତାବଙ୍କ ପ୍ରସ୍ତାବ ଅନୁସାରେ ତାହା 'ସ୍ୱରାଜ୍ୟ ମନ୍ଦିର' ନାମରେ ନାମିତ ହେଲା । ଏହି ସମୟରେ 'ସ୍ୱରାଜ୍ୟ ସମାଚାର' ନାମରେ ଲିଥୋରେ ଛପା ସାପ୍ତାହିକ ପତ୍ରିକାଟିଏ ବାହାର କରାଗଲା ଓ ଜିଲାର ବିଭିନ୍ନ ସ୍ଥାନକୁ ତାହା ପଠାଇବାର ବ୍ୟବସ୍ଥା କରାଗଲା ।

ବାଲେଶ୍ୱର ଜିଲାର ବିଭିନ୍ନ ସ୍ଥାନରେ ସଙ୍ଗଠନ କରିବା ଓ କଂଗ୍ରେସର ବାର୍ତ୍ତା ପ୍ରଚାର କରି ଆନ୍ଦୋଳନ ଚାଲୁ ରଖିବା ପାଇଁ କର୍ମୀମାନଙ୍କୁ ବିଭିନ୍ନ ସ୍ଥାନକୁ ପଠାଗଲା । ତଦନୁସାରେ ଜଳେଶ୍ୱରକୁ କରୁଣାକର ପାଣିଗ୍ରାହୀ ଓ ତାଙ୍କୁ ସାହାଯ୍ୟ କରିବା ପାଇଁ ବିଶ୍ୱନାଥ ହୋତାଙ୍କୁ ପଠାଗଲା । ସେତେବେଳେ ମହତାବଙ୍କ ସାନଭାଇ

କାହ୍ନୁ ଚରଣ ଭଦ୍ରକ ହାଇସ୍କୁଲରେ ପଢ଼ୁଥାନ୍ତି । ୧୯୨୧ ମସିହା ସେପ୍ଟେମ୍ବର ମାସରେ ସେ ପାଠପଢ଼ା ଛାଡ଼ି ଜଳେଶ୍ବର ଆସିଲେ ଓ କରୁଣାକର ପାଣିଗ୍ରାହୀଙ୍କ ଅଧୀନରେ ଜଣେ ନିଷ୍ଠାପର କର୍ମୀ ଭାବରେ ସ୍ୱାଧୀନତା ଆନ୍ଦୋଳନର ବଭିନ୍ନ କାର୍ଯ୍ୟକ୍ରମରେ ଭାଗନେଇ ଜଳେଶ୍ବର -ରାଇବଣିଆ ଅଞ୍ଚଳରେ ସଂଗଠନକୁ ଦୃଢ଼ କଲେ ।

କୃଷ୍ଣ ପ୍ରସାଦ ମହାପାତ୍ର ବସ୍ତାକୁ ଗଲେ ଓ ତାଙ୍କର ସାହାଯ୍ୟକାରୀ ଭାବରେ ପୀତାମ୍ବର ଦାସ ଗଲେ । ବାଲେଶ୍ବର ଠାରେ ନିଜେ ଶ୍ରୀ ମହତାବ ଉକ୍ତ ସଂଗଠନ କାମ ଚଳେଇଲେ । ତାଙ୍କୁ ଏ ଦିଗରେ ସହାୟତା କଲେ ସୁରେନ୍ଦ୍ର ନାଥ ଦାସ ବା ସର୍ଦ୍ଦାର ସୁରେନ୍ଦ୍ର । ଭଦ୍ରକରେ ବାଞ୍ଛାନିଧି ଦାସ, ଘନଶ୍ୟାମ ସାହୁ ଓ ମୌଲବୀ ମହମ୍ମଦ ହନିଫ କଂଗ୍ରେସର ସଂଗଠନ କାର୍ଯ୍ୟ କରିବା ଦିଗରେ ମନପ୍ରାଣ ଦେଇ ଲାଗି ପଡ଼ିଲେ । ସୋରରେ ନନ୍ଦ କିଶୋର ଦାସ ଥାନ୍ତି । ପୋଲିସ ସବ୍ ଇନସପେକ୍ଟର ଚାକିରୀ ଛାଡ଼ି ମୌଲବୀ ମହମ୍ମଦ ହନିଫ କଂଗ୍ରେସ ଦଳରେ ସାମିଲ ହୋଇଥିଲେ ।

ରାଇବଣିଆ ଅଞ୍ଚଳରେ ଚମାରଗାଁର କୃଷ୍ଣ ପ୍ରସାଦ ଜେନା, ଚନ୍ଦ୍ରାମଣି ଜେନା, ତ୍ରିଲୋଚନ ଦାସ, ସରଡ଼ିହାର ସତ୍ୟେନ୍ଦ୍ର ନାଥ ଡଗର, ଦିବାକର ଗିରି, ଭଣ୍ଡାରପର୍କ୍ଷିର କାଶୀରାମ ଦାସ, ଦୋଳାଇର ଗଙ୍ଗାଧର ଗିରି, କ୍ଷେତ୍ରମୋହନ ଜେନା, କମାରଶୋଳର ପଦ୍ମନାଭ କାନ୍ତ ଓ ଶାଳବଣିର ଜଗନ୍ନାଥ ଦାସ ଅଧିକାରୀ ରାଇବଣିଆର ଲକ୍ଷ୍ମୀନାରାୟଣ ଗୋସ୍ୱାମୀ ଓ ଫକୀର ଦାସ ଏବଂ କଙ୍କଡ଼ାପେଟର ଚନ୍ଦ୍ରାମଣି ଜେନା ଆଦି କର୍ମୀମାନେ ଜଳେଶ୍ବର ଅଞ୍ଚଳର ଗୋପ ଗ୍ରାମର ଶ୍ରୀ ହରେନ୍ଦ୍ର ନାଥ ଘୋଷ, ଝାଡ଼ପିପଳର

ଶ୍ରୀ ଗଙ୍ଗାନାରାୟଣ ଦାସ, ଦେଉଳା ଗ୍ରାମର ଜଗବନ୍ଧୁ ଜେନା, ସୁଗୋର ରମାକାନ୍ତ ପଣ୍ଡା, ଖୁଲୁଡ଼ାର ଶ୍ରୀକାନ୍ତ ହୋତା, ଲକ୍ଷ୍ମଣନାଥର ହରେନ୍ଦ୍ର ନାଥ ଦାସ ଓ ଫଣୀ ଭୂଷଣ ଦାସ ପ୍ରଭୃତି ଗାଁକୁ ଗାଁ ବୁଲି ସଂଗଠନ କାମ କରୁଥାନ୍ତି ।

ଉତ୍ତର ବାଲେଶ୍ୱରର ବୃନ୍ଦାଠାରେ ୧୯୨୩ ମସିହାରେ ଜିଲ୍ଲା କଂଗ୍ରେସ ସମ୍ମିଳନୀ ଅନୁଷ୍ଠିତ ହେଲା । ଏଥିରେ ଶ୍ରୀ ହରେକୃଷ୍ଣ ଘୋଷ ସଭାପତି ହୋଇଥିଲେ । ୧୯୨୪ରେ ଜଳେଶ୍ୱରଠାରେ କଂଗ୍ରେସ ସମ୍ମିଳନୀ ବଙ୍ଗଳାର ବିଶିଷ୍ଟ ଗାନ୍ଧିବାଦୀ ନେତା, ସ୍ୱାଧୀନତା ସଂଗ୍ରାମୀ ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ଓଡ଼ିଶାର ବରିଷ୍ଠ କଂଗ୍ରେସ ନେତା ଯଥା, ପଣ୍ଡିତ ଗୋପବନ୍ଧୁ ଦାଶ, ପଣ୍ଡିତ ନୀଳକଣ୍ଠ ଦାଶ ଓ ଗୋପବନ୍ଧୁ ଚୌଧୁରୀ ପ୍ରମୁଖ ଏଥିରେ ଯୋଗଦେଇ ସମସ୍ତଙ୍କୁ ଉଦ୍‌ବୋଧନ ଦେଇଥିଲେ । ଗାଁକୁ ଗାଁ ପଦଯାତ୍ରା କରି ଅହିଂସା ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିବାର ସିଦ୍ଧାନ୍ତ ଏ ସଭାରେ ଗୃହୀତ ହେଲା ।

କରୁଣାକର ପାଣିଗ୍ରାହୀ ଓ ବିଶ୍ୱନାଥ ହୋତା ଏ ଅଞ୍ଚଳର ପ୍ରତ୍ୟେକ ଗାଁକୁ ଯାଇ ଜନସାଧାରଣ, ଯୁବ ଓ ଶିକ୍ଷିତ ଲୋକମାନଙ୍କ ସହିତ ମିଶି ସେମାନଙ୍କୁ ସଂଗଠନ ପ୍ରତି ଆକୃଷ୍ଟ କରାଉଥିଲେ । ମହତାବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସଂଗଠନର କାମ ଆଗେଇ ଚାଲିଥାଏ । ସେ ଅକ୍ଳାନ୍ତ ପରିଶ୍ରମ କରି ଏ ଅଞ୍ଚଳର ବିଭିନ୍ନ ଗାଁକୁ ଯାଇ ଲୋକମାନଙ୍କ ସଂସ୍ପର୍ଶରେ ଆସୁଥାନ୍ତି ।

*

## ଚମାର ଗାଁରେ ଶ୍ରୀ ମହତାବ

ଚମାରଗାଁ ଗାଁ ଦାଣ୍ଡରେ କେତେଜଣ ଯୁବକ ଚାଲିଥାନ୍ତି । ଦେହରେ ଆଣ୍ଠୁ ନ ଲୁଚୁ ଖଦଡ଼ ଲୁଗା ଓ ଖଦଡ଼ ଚଦର । ମୁହଁରେ ଉଜ୍ଜ୍ୱଳତା, ସଦା ପ୍ରସନ୍ନ ଭାବ । ସେମାନଙ୍କ ଭିତରେ ଥାନ୍ତି ଯୁବକ ହରେକୃଷ୍ଣ ମହତାବ- ଯାହାଙ୍କ ଆଡ଼କୁ ସ୍ୱତଃ ସମସ୍ତଙ୍କ ଚକ୍ଷୁ ଚାଲିଯାଏ— ଦୀର୍ଘ ସମୟ ଅନାଇ ରହିବାକୁ ଇଚ୍ଛାହୁଏ । ସେ ଅଗରପଡ଼ା ରାଜାଙ୍କ ପୁଅ । ସେମାନେ ଆଣ୍ଠୁଏ କାଦୁଅରେ ମଧ ଖଦଡ଼ ଲୁଗାକୁ ଟେକିଧରି ଚାଲିଥାନ୍ତି । ଗାଁର ସ୍ତ୍ରୀ ଲୋକମାନେ କବାଟ କୋଣରୁ ରାସ୍ତାକୁ ଅନେଇଥାନ୍ତି । ବୁଢ଼ୀ କେଇଜଣ କୁହାକୁହି ହେଉଥାନ୍ତି କେମିତି କେଜାଣି ତାଙ୍କର ମାଆ ବାପା ଦେଶକାମ ପାଇଁ ଏଭଳି ପୁଅକୁ ଛାଡ଼ି ଦେଇଛନ୍ତି । ଯେଉଁଠି ସବୁବେଳେ ଲଠିମାଡ଼, ଗୁଳି ଗୁଳାର କାରବାର, ତାହାରି ଭିତରେ ଚାଲିଛି ଏମାନଙ୍କର ଖେଳ ।

ପଛରେ ଆସିଲେ ଆଉ ଦଳେ ଯୁବକ- ସେଇମାନେ ଏଇ ଚମାରଗାଁ ତଥା ଆଖ ପାଖ ଗାଁର ଲୋକମାନେ । କୃଷ୍ଣ ପ୍ରସାଦ ଜେନା ସେମାନଙ୍କର ନେତୃତ୍ୱ ନେଇଥିଲେ । ସାଥିରେ ତ୍ରିଲୋଚନ ଦାସ, ସୁରେଶ ଚନ୍ଦ୍ର ଦେ, ପଦ୍ମନାଭ କାନ୍ତ, ସତ୍ୟେନ୍ଦ୍ର ନାଥ ଡଗର, ଜଗନ୍ନାଥ ଦାସ ଅଧିକାରୀ, ଗୋପାଳ ଚନ୍ଦ୍ର ସିଂ ଓ ପଦ୍ମନାଭ ବାରିକ ପ୍ରଭୃତି ଥିଲେ । ସେମାନେ ଖୁସି ମନରେ ବିଭିନ୍ନ ଦେଶାତ୍ମବୋଧକ ଗୀତ ଗାଉଥାନ୍ତି ଓ ସ୍ଲୋଗାନ ଦେଉଥାନ୍ତି ।

ଆସ୍ତେ ଆସ୍ତେ ସେମାନଙ୍କ ସ୍ୱର ଦୂରେଇ ଗଲା । କିନ୍ତୁ ସେମାନଙ୍କ ପଛରେ ଚାଲିଥିବା ଲୋକମାନଙ୍କ ସଂଖ୍ୟା ବଢ଼ୁଥାଏ । ସେମାନେ ଗାଁର ପଶ୍ଚିମ ପାଖରେ ଶାନ୍ତିପୁର ସଡ଼କର ଅନତିଦୂରରେ ତିଆରି

ହୋଇଥିବା ଏକ ସଭାସ୍ଥଳୀରେ ଯାଇ ପହଞ୍ଚିଲେ । କୃଷ୍ଣ ପ୍ରସାଦ ଜେନାଙ୍କର ଗୃହ ଜମିରୁ ନଡ଼ାକାଟି ବସିବା ଉପଯୋଗୀ କରାଯାଇଥାଏ ।

ଏ ହେଉଛି ୧୯୨୪-୨୫ ମସିହାର କଥା । ଏକ ବିରାଟ ସାଧାରଣ ସଭା କରାଯାଇ କଂଗ୍ରେସର ବାର୍ତ୍ତା ପ୍ରଚାର କରାଗଲା । ସଭାର କାର୍ଯ୍ୟ ଅଧାଅଧି ବେଳକୁ କେତେଜଣ ଚୌକିଦାର ଓ ପୋଲିସ କନଷ୍ଟେବଳ ଆସି ପହଞ୍ଚିବାରୁ ସଭାରେ ହଇଚଇ ପଡ଼ିଗଲା । ମହତାବଙ୍କ ଆଶ୍ୱାସନା ଓ ପୋଲିସକୁ କିଛି ଭୟ କରିବାର ନାହିଁ ବୋଲି କହିବା ସତ୍ତ୍ୱେ ବେଶୀ ଭାଗ ସ୍ତ୍ରୀ, ପୁରୁଷ ସଭାସ୍ଥଳୀ ଛାଡ଼ି ପଳେଇ ଗଲେ । ମାତ୍ର ଅଳ୍ପ କେତେ ଜଣ ଅତି ସାହସର ସହିତ ସଭା ଶେଷ ହେବା ଯାଏ ବସିରହି ସବୁ କଥା ଧୈର୍ଯ୍ୟର ସହିତ ଶୁଣିଲେ ।

ଏ ଘଟଣା ସମଗ୍ର ଫତେଆବାଦ ପ୍ରଗଣାରେ ଚହଳ ପକାଇ ଦେଲା । ସୂର୍ଯ୍ୟ ଅସ୍ତ ହେଉ ନଥିବା ବ୍ରିଟିଶ ସାମ୍ରାଜ୍ୟର ଶାସକ ବ୍ରିଟିଶ ସମ୍ରାଟଙ୍କ ବିରୁଦ୍ଧରେ ଲାଠି, ଗୁଳି, ଗୁଳାର ସାହାଯ୍ୟ ନ ନେଇ ମୋହନ ଦାସ କରମଚନ୍ଦ ଗାନ୍ଧୀ ବା ଗାନ୍ଧିଜୀ ନାମରେ ଜଣେ ସାଧାସିଧା ନଣିଟ ସଂଗ୍ରାମ ଆରମ୍ଭ କରିଛନ୍ତି । ବିଦେଶୀ ଜିନିଷ ବର୍ଜନ, "କାଟି ପିନ୍ଧ- କୁଟି ଖାଅ" ତାଙ୍କ ଜୀବନର ଆଦର୍ଶ; ଗୀତା, କୋରାନ ଓ ବାଇବେଲକୁ ସିଏ ସମାନ ମର୍ଯ୍ୟାଦା ଦିଅନ୍ତି । ଇଂରେଜ ବିରୋଧରେ ଚାଲିଥିବା ସତ୍ୟାଗ୍ରହ ଆନ୍ଦୋଳନରେ ତାଙ୍କର ଅସ୍ତ୍ର ହେଲା ସତ୍ୟ ଓ ଅହିଂସା । ଯୁଦ୍ଧ ବା ସଂଗ୍ରାମ କହିଲେ ସାଧାରଣତଃ ବୁଝାଏ ବାରୁଦର ପ୍ରକାଶ । ଇଏ ହେଲା ନିରସ୍ତ୍ର ସଂଗ୍ରାମ । ଏ ଅଞ୍ଚଳର ପାଇକ ମାନଙ୍କର ବଂଶଧର, ବାଇବଣିଆ ଦୁର୍ଗର ରକ୍ଷାକାରୀ ରାଜା ଓ ଅନ୍ୟାନ୍ୟ ଜାତିର ଲୋକମାନେ କାହିଁକି କେଜାଣି ଏ କଥାକୁ

ଭଲରେ ଗ୍ରହଣ କରି ପାରୁ ନଥାନ୍ତି । ମାତ୍ର ଶ୍ରୀ ମହତାବଙ୍କ ଯାଦୁକରୀ କଥା ଓ କାର୍ଯ୍ୟର ସଂସ୍ପର୍ଶରେ ଆସିବାରୁ ଗାନ୍ଧିଜୀଙ୍କ ବାଣୀ ସମସ୍ତଙ୍କ ମନକୁ ଛୁଇଁଲା । ସମସ୍ତେ ଆକୃଷ୍ଟ ହେଲେ ଓ ମୋହିତ ହେଲେ । ଅହିଂସ ସତ୍ୟାଗ୍ରହରେ ବ୍ରତୀ ହୋଇ ଦେଶ ମାତୃକାର ମୁକ୍ତି ସଂଗ୍ରାମରେ ଜୀବନକୁ ପଣ ରଖିଲେ । ସ୍ୱେଚ୍ଛା ସେବକ ହିସାବରେ କାମ କରିବାକୁ ଅନେକ ଯୁବକ ବାହାରିଲେ ।

ଏହାପରେ ଗୁଇବଣିଆ ଅଞ୍ଚଳକୁ ଶ୍ରୀମହତାବ ବାରମ୍ବାର ଆସିଲେ । ଥରେ ଥରେ ଦିନର ପ୍ରଖର ଆଲୁଅରେ ତ ଆଉ କେତେ ବେଳେ ପୋଲିସ ଆଖିରେ ଧୂଳି ଦେଇ ରାତିର ଅନ୍ଧକାରରେ ଆସିଲେ । କେତେବେଳେ ଆସିଲେ ଧୋତି ଗେଞ୍ଜି ପିନ୍ଧି ଓ କାନ୍ଧରେ ଗାମୁଛା ପକାଇ ତ କେତେବେଳେ ସାଧାରଣ କୃଷକ ବେଶରେ ମଥାରେ ପଗଡ଼ି ବାନ୍ଧି ବା ପଘିଆଟିଏ ଦେଇ । ଚମାରଗାଁର କୃଷ୍ଣ ପ୍ରସାଦ ଜେନାଙ୍କ ଘରେ ରହନ୍ତି । ଶାଗ, ପଖାଳ ଖାଆନ୍ତି, ଆନ୍ଦୋଳନର ବାଣୀ ଲୋକଙ୍କ ପାଖରେ ପହଞ୍ଚାଇ ଦିଅନ୍ତି । ପୁଣି ହଠାତ୍ ଉଭାନ ହୋଇ ସରଡ଼ିହାର ସତ୍ୟେନ୍ଦ୍ର ନାଥ ଡଗର ବା ଗୁଇବଣିଆର ଲକ୍ଷ୍ମୀନାରାୟଣ ଗୋସ୍ୱାମୀ ବା ଅନ୍ୟ କେଉଁ ଗାଁର କାହା ଘରେ ଯାଇ ପହଞ୍ଚନ୍ତି । ଏହିପରି ଭାବରେ ଚମାରଗାଁ, ଶାଳବଣି, କମାରଗୋଳ, ସରଡ଼ିହା, ଗୁଇବଣିଆ, ବାଘୁଡ଼ିପଦା, ଖୁଆଡି ଓ କଙ୍କଡ଼ାପେଟା ପ୍ରଭୃତି ଗାଁରେ ବିଭିନ୍ନ ସମୟରେ ହରେକୃଷ୍ଣ ମହତାବ, କରୁଣାକର ପାଣିଗ୍ରାହୀ, ନୀଳାମ୍ବର ଦାସ, ସୁରେନ୍ଦ୍ର ନାଥ ଦାସ, ଗୌର ଚନ୍ଦ୍ର ଦାସ, ବିଶ୍ୱନାଥ ହୋତା, ମାଳଣ୍ଡ ଚୌଧୁରୀ, ନବକୃଷ୍ଣ ଚୌଧୁରୀ ଓ

ପ୍ୟାରୀମୋହନ ଦାସ ପ୍ରଭୃତି ଆସି ସଭା ସମିତି ମାନ କଲେ । ଫଳରେ ଲୋକଙ୍କ ମନରୁ ଯୁଗ ଯୁଗର ସଞ୍ଚିତ ଭୟ ଦୂରେଇ ଯାଇ ସାହସର ସଞ୍ଚାର ହେଲା ।

ସଭା ହେଲେ ନିର୍ଦ୍ଦିଷ୍ଟ ସ୍ଥାନରେ ପଂକ୍ତି ଭୋଜନ ହେବ । ଲୋକେ ଘରୁ ଡାଲି, ଚାଉଳ ଓ ପନିପରିବା ସାଥିରେ ନେଇ ଆସନ୍ତି । ସଭା ଶେଷରେ ଗୋଲାକାରରେ ସମସ୍ତେ ବସନ୍ତି । ଖାଇବା ବେଳେ ମଧ୍ୟ ମହତାବ ଦେଶର କଥା ଗପ କରନ୍ତି । ଛିଣ୍ଡା, ଅଛିଣ୍ଡା ନାହିଁ, ଯାହାକୁ ଦେଖିଲେ ପଚାରିବେ- "କହେ। କମିତି ଅଛ, କଣ କରୁଛ ?" କ୍ରମେ ଛାତ୍ର, ଯୁବକ ଓ ସମାଜର ବିଭିନ୍ନ ଶ୍ରେଣୀର ଲୋକ ଜଳେଶ୍ୱର ତଥା ପାଖ ମୟୂରଭଞ୍ଜ ଗଡଜାତ ଓ ମେଦିନୀପୁର ଜିଲ୍ଲାରୁ ଆସି ସଭା ମାନଙ୍କରେ ଯୋଗ ଦେଲେ । ଲକ୍ଷ୍ମୀନାଥ ହାଇସ୍କୁଲରେ ପଢୁଥିବା ବେଳେ ଅଟଳ ବିହାରୀ ମହାନ୍ତି ଧନେ ଶ୍ରେଣୀରେ ବହି ବସ୍ତାନି ପକାଇ ଦେଇ ଶିକ୍ଷକ ମାନଙ୍କ ଅଗୋଚରରେ ଲୁଚିକରି ଆସି ଚମାରଗାଁ ଠାରେ ହେଉଥିବା ସଭାରେ ମହତାବଙ୍କ ଭାଷଣ ଶୁଣିଲେ । ଆଉ ଥରେ ରାଇବଣିଆ ଯାଇ କରୁଣାକର ପାଣିଗ୍ରାହୀଙ୍କ ସଭାରେ ଯୋଗ ଦେଲେ ।

୨

ଏହାର ପରବର୍ତ୍ତୀ ଘଟଣାବଳୀ ଖୁବ୍ ଦ୍ରୁତ ଗତିରେ ଆଗେଇ ଯାଉଥାଏ । ମଦ ଓ ଅଫିମ ଦୋକାନ ଆଗରେ ପିକେଟିଂ କରିବା ବେଳେ ସତ୍ୟାଗ୍ରହୀ ମାନଙ୍କୁ ନାନା ରକମର ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡୁଥାଏ । ପିକେଟିଂ ଯୋଗୁଁ ମାଦକ ଦ୍ରବ୍ୟ ବ୍ୟବସାୟୀ ମାନଙ୍କର ବିକି ମାନ୍ଦା ହୋଇଯିବାରୁ ସେମାନେ କ୍ରୋଧାନ୍ୱିତ ହୋଇ ପ୍ରତିଶୋଧ ପରାୟଣ ହେଲେ ଓ ବାନର ସେବା ତଥା

ସତ୍ୟାଗ୍ରହୀ ମାନଙ୍କୁ ଶାରୀରିକ ନିର୍ଯ୍ୟାତନା ଦେଉଥିଲେ । ସେମିତି ସହର ମାନଙ୍କରେ ମଦ ଦୋକାନ ପାଖରେ ଥିବା ରୂପାଜୀବମାନେ ସେମାନଙ୍କ ବ୍ୟବସାୟରେ ବାଧା ଘଟୁଥିବା ଯୋଗୁଁ ସତ୍ୟାଗ୍ରହୀ ମାନଙ୍କ ଉପରକୁ ଛେପ, ଖଙ୍କାର, ଏପରିକି ପରିସ୍ରାକୁ ମଧ୍ୟ ଫୋପାଡ଼ୁ ଥିଲେ । ଏତେ ସବୁ ଅତ୍ୟାଚାର ପରେ ବି ସତ୍ୟାଗ୍ରହୀ ମାନେ ଦବି ଯାଉ ନଥିଲେ । ବାଲେଶ୍ୱର ସହର, ଜଳେଶ୍ୱର ବଜାର, ରାଇବଣିଆ, ଟୁଆଡ଼ି, ହାଣ୍ଡିଗଡ଼ ଓ ବରଡ଼ିହା ଅଞ୍ଚଳରେ ଥିବା ମଦ ଓ ହାଣ୍ଡିଆ ଦୋକାନ ଆଗରେ ଏଇଭଳି ପିକେଟିଂ ଚାଲିଥାଏ । ପୋଲିସ ମଧ୍ୟ ସତ୍ୟାଗ୍ରହୀ ମାନଙ୍କୁ ଏରେଷ୍ଟ କରି ପୁଣି ଛାଡ଼ି ଦେଉଥାନ୍ତି । କେବେ କେବେ ସେମାନଙ୍କୁ ବେହାଘାତ ହେଉଥାଏ । ତହିଁ ପରଦିନ ପୁଣି ସେମାନେ ସତ୍ୟାଗ୍ରହ କରୁଥାନ୍ତି । ମାଦକ ଦ୍ରବ୍ୟ ସେବନ ନ କରିବା ପାଇଁ ଲୋକଙ୍କୁ ବୁଝାଉଥାନ୍ତି । ତେଘରିର ଶିରିଷ ଚନ୍ଦ୍ର ଦେ, ଭନୁପୁରର ଗୋବିନ୍ଦ ଗିରି, ମଥୁରା ନଥରର ଅବିନାଶ ଚନ୍ଦ୍ର ଦେହୁରୀ ପ୍ରଭୃତି ଏବାନର ସେନା ରୂପେ କାମ କରୁଥିଲେ ।

ସେତେବେଳେ ବାଲେଶ୍ୱର ଜିଲ୍ଲାର ଗାଁ ଗହଳରେ ଅଫିମର ବ୍ୟାପକ ବ୍ୟବହାର ହେଉଥାଏ । ସାଧାରଣତଃ ଅଫିମିଆ ମାନେ ଗରିବ ଶ୍ରେଣୀର ଲୋକ ହୋଇଥିବାରୁ କାଳକ୍ରମେ ସେମାନେ ନିଜର ଜମିବାଡ଼ି ହରାଇ ସର୍ବସ୍ୱାନ୍ତ ହୋଇ ଯାଉ ଥିଲେ । ଅନେକ ଆଭିଜାତ୍ୟ ସମ୍ପନ୍ନ ଓ ଧନୀ ଲୋକ ମଧ୍ୟ ମଦ ଭଳି ଅଫିମ ସେବନ କରୁଥିଲେ । କଂଗ୍ରେସ କର୍ମୀମାନେ ଅଫିମିଆ ମାନଙ୍କୁ ନିବର୍ତ୍ତାଉଥାନ୍ତି । ଫଳରେ ଲୋକମତ ଏସବୁ ଦ୍ରବ୍ୟର ବ୍ୟବହାର ବିରୁଦ୍ଧରେ ସୃଷ୍ଟି ହୋଇ ପାରିଥିଲା ।

୧୯୧୯ ମସିହା ଭାରତ ଶାସନ ଆଇନ ଅନୁଯାୟୀ 'ବିହାର-ଓଡ଼ିଶା ସ୍ୱାୟତ୍ତ ଶାସନ ଆଇନ' ପ୍ରଣୀତ ହେଲା । ତଦନୁସାରେ ୧୯୨୩ ମସିହାରେ ଜିଲା ବୋର୍ଡ଼ ଗୁଡ଼ିକର ପୁନର୍ଗଠନ କରାଗଲା ଓ ନିର୍ବାଚନ ଅନୁଷ୍ଠିତ ହେଲା । ତା ପୂର୍ବରୁ ସରକାରଙ୍କ ଦ୍ୱାରା ମନୋନୀତ ଲୋକେ ଏହାର ପରିଚାଳନା କରୁଥିଲେ । ତେଣୁ ସେତେବେଳେ ସରକାରଙ୍କର ଅନ୍ୟାନ୍ୟ ଦପ୍ତର ଓ ଜିଲାବୋର୍ଡ଼ ମଧ୍ୟରେ ଥିବା ପାର୍ଥକ୍ୟକୁ ଲୋକେ ଜାଣି ପାରୁ ନ ଥିଲେ ।

ବାଲେଶ୍ୱର ଜିଲା ବୋର୍ଡ଼ର ଚେୟାରମ୍ୟାନ ଭାବରେ ୧୯୨୩ ମସିହାରେ ନିର୍ବାଚିତ ହେବାପରେ ଶ୍ରୀ ମହତାବ ଓ ଜିଲା ବୋର୍ଡ଼ର ଅନ୍ୟାନ୍ୟ କର୍ମକର୍ତ୍ତାମାନେ ଜିଲାର ସମସ୍ତ ଅଞ୍ଚଳ ଗସ୍ତ କରି ଲୋକଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସି ସେମାନଙ୍କର ସୁବିଧା, ଅସୁବିଧା ବିଷୟରେ ଜ୍ଞାନ ଅର୍ଜନ କଲେ ଓ ସେମାନଙ୍କର ମୁଖ୍ୟ ସମସ୍ୟା ଗୁଡ଼ିକର ପ୍ରତିକାର କରିବାରେ ଆପ୍ରାଣ ଉଦ୍ୟମ କଲେ । ପ୍ରାଥମିକ ଓ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରି ଶିକ୍ଷାର ପ୍ରସାର, କେତେକ ମୁଖ୍ୟ ରାସ୍ତା ନିର୍ମାଣ କରି ଗମନା ଗମନର ସୁବିଧା କରିଦେବା, ପାନୀୟ ଜଳର ସୁବିଧା ପାଇଁ ନୂଆ ପୋଖରୀ ଓ କୂଅ ଖୋଳିବା, ପଶୁ ଓ ମଣିଷ ପାଇଁ ଚିକିତ୍ସାଳୟ ପ୍ରତିଷ୍ଠା ଆଦି କାମ ସେ ହାତକୁ ନେଲେ । ଫଳରେ ଲୋକଙ୍କ ସମ୍ପର୍କରେ ଆସି କଂଗ୍ରେସର ବାର୍ତ୍ତା ପ୍ରଚାର କରିବା ଓ ଶାସନ ପରିଚାଳନାରେ ଅଂଶ ଗ୍ରହଣ କରି ପ୍ରତ୍ୟକ୍ଷ ଅଭିଜ୍ଞତା ଅର୍ଜନ କରିବା ସମ୍ଭବ ହେଲା । ପୁନଶ୍ଚ ଏସବୁ କାମ ସହିତ ସଂପୃକ୍ତ ନ ଥିବା କଂଗ୍ରେସ କର୍ମୀମାନେ ସାଂଗଠନିକ ଓ ସମାଜ ସଂସ୍କାର କାମ ଯଥା-କଂଗ୍ରେସ ପାଇଁ ସଭ୍ୟ ସଂଗ୍ରହ, ନିଶା ନିବାରଣ, ଗାଁ ଲୋକମାନଙ୍କୁ କୋର୍ଟ କଚେରୀକୁ ଯିବାକୁ ନ ଦେଇ ପଞ୍ଚାୟତ ଗଠନ କରି

ସେମାନଙ୍କର ଗୋଳମାଳର ମୀମାଂସା କରିବା, ସୂତା କାଟି ଲୁଗା ବୁଣିବା ତଥା ଅସ୍ପୃଶ୍ୟତା ଦୂରୀକରଣ ଭଳି କାର୍ଯ୍ୟରେ ନିଜକୁ ନିୟୋଜିତ କଲେ ।

ଆନ୍ଦୋଳନର ଅନ୍ୟତମ ମୁଖ୍ୟ କାର୍ଯ୍ୟ ଥିଲା ବିଦେଶୀ ଓ ମିଲ ତିଆରି ବସ୍ତ୍ର ଏବଂ ବିଦେଶୀ ଜିନିଷ ବର୍ଜନ କରିବା । ତେଣୁ ବିଦେଶୀ ବସ୍ତ୍ର ନ ପିନ୍ଧିବା ପାଇଁ ଲୋକଙ୍କୁ ପ୍ରବର୍ତ୍ତାଇବା ଓ ବିଦେଶୀ ଲୁଗା ଆଣି ବିକ୍ରି କରୁଥିବା ବେପାରୀମାନଙ୍କୁ ସେଥିରୁ ନିବର୍ତ୍ତାଇବା— ଏ ଆନ୍ଦୋଳନର ଦୁଇଟି ମୁଖ୍ୟ ଦିଗ ଥିଲା । କର୍ମୀମାନେ ଦଳ ଦଳ ହୋଇ ବିଦେଶୀ ଲୁଗା ଦୋକାନ ଆଗରେ ପିକେଟିଂ କରୁଥିଲେ ଏବଂ ବିଦେଶୀ ଓ ମିଲ ତିଆରି ଲୁଗା ଆଣି ପୋଡି ଦେଉଥିଲେ । ସେତେବେଳେ କିଶୋର ବୟସର ବାନର-ସେନାମାନଙ୍କ କଣ୍ଠରୁ ଉଚ୍ଚାରିତ ହେଉଥାଏ ସ୍ୱପ୍ନ ସ୍ମରଣ କବି ବାଞ୍ଛାନିଧି ମହାନ୍ତିଙ୍କ ଭକ୍ତ ହୃଦୟସ୍ପର୍ଶୀ ସ୍ୱଦେଶୀ ଗୀତର ମୂର୍ଚ୍ଛନା-

‘ଭଉଣୀ ଗୋ ମାତା ଖୁଡ଼ି, ନ ପିନ୍ଧ ଏ କାଚ ଚୂଡ଼ି
କାନ୍ଦି କହେ ବୁଢ଼ା ଗାନ୍ଧୀ ନ ପିନ୍ଧ ବିଲାତି ଶାଢ଼ୀ,
ତୁମ ଲାଗି ମୁଁ ହେଲି ବନ୍ଦୀ
କାଟ ସୂତା ଯତ୍ନ କରି, ଭଉଣୀ ଗୋ ମାତା ଖୁଡ଼ି ।’

ଏ ଗୀତ ଶୁଣି ମାଆ ଓ ଭଉଣୀମାନେ ଖୁବ୍ ଉଦ୍ବେଳିତ ହୋଇ ହାତରେ ଥିବା ବିଲାତି କାଚ ଚୂଡ଼ି ଭାଙ୍ଗି ଦେଉଥିଲେ । ସ୍ତ୍ରୀ ଓ ପୁରୁଷମାନେ ମିଲ ତିଆରି ତଥା ବିଲାତି ଶାଢ଼ୀ ଓ ଧୋତି, ପେଣ୍ଟ ସବୁ ବାନର ସେନାମାନଙ୍କୁ ଦେଇ ଦେଉଥିଲେ । ସେମାନେ ସେ ସବୁ ଏକତ୍ରିତ କରି ସର୍ବସାଧାରଣ ସ୍ଥାନରେ ପୋଡ଼ି ଦେଉଥିଲେ ।

ପୋଡ଼ିବା ସ୍ଥାନର ଚତୁଃପାର୍ଶ୍ୱରେ ଲୋକମାନେ ଘେରିଯାଇ ଏହାକୁ ବେଶ୍ ଉପଭୋଗ କରୁଥିଲେ । ଲୋକମାନେ ସ୍ୱେଚ୍ଛାରେ ଯେ ଯାହାର ବିଦେଶୀ ମିଲ ତିଆରି ଲୁଗା ଓ ଜାମା ପୋଡ଼ି ଦେଉଥିବାରୁ ପୋଲିସ ମଧ୍ୟ ସେଥିରେ ହସ୍ତକ୍ଷେପ କରିପାରୁ ନ ଥିଲେ ।

କେବଳ ସେତିକି ନୁହେଁ; ବିଦେଶୀ ଲୁଗା ବୋଝ ବା ଗାଣ୍ଠିକୁ ଷ୍ଟେସନ ବା ଗୋଦାମରୁ ଦୋକାନକୁ କୌଣସି କୁଲି ବା ଗାଡ଼ିଆଳ ବୋହି କରି ନ ଆଣିବା ପାଇଁ ସେମାନଙ୍କୁ ବୁଝାଇ ଦିଆ ଯାଉଥିଲା । ଯଦି ସେମାନେ ବା କେହି ଜଣେ ଏ କଥା ମାନୁ ନ ଥିଲେ, ତେବେ କର୍ମୀମାନେ ସେ ଗାଡ଼ି ଆଗରେ ଶୋଇ ଯାଉଥିଲେ । ଏତେସବୁ ପରେ ବି ଯଦି କୌଣସି ବ୍ୟବସାୟୀ ବିଦେଶୀ ଲୁଗା ଆଣିବା ବନ୍ଦ କରୁ ନ ଥିଲେ, ତେବେ ତାଙ୍କୁ ସାମାଜିକ ବାସନ୍ଦ କରାଯାଉଥିଲା । କେହି ତାଙ୍କ ସହିତ କୌଣସି ପ୍ରକାରର ସହଯୋଗ କରୁ ନ ଥିଲେ । ବାଧ୍ୟ ହୋଇ ଶେଷରେ ସେ ଏକ ସମାଧାନରେ ଉପନୀତ ହେଉଥିଲେ । ଆର୍ଥିକ ଜୋରିମାନା ଦେଇ ବିଦେଶୀ ଲୁଗା ପୋଡ଼ିଦେଇ ବିଦେଶୀ ଲୁଗା ଆଉ ନ ଆଣିବାର ପ୍ରତିଶ୍ରୁତି ଦେଇ ସେ ସମସ୍ତଙ୍କ ସାଥୀରେ ମିଶି ଯାଉଥିଲେ । ବିଦେଶୀ ଓ ମିଲ ତିଆରି ଲୁଗା ଦୋକାନ ଆଗରେ ପିକେଟିଂ କରି ମହତାବଜୀ ଓ ଅନ୍ୟମାନେ ଜେଲଦଣ୍ଡ ମଧ୍ୟ ଭୋଗିଛନ୍ତି ।

ଏ ସମୟରେ ଜଳେଶ୍ୱରରେ ଏକ ଉଲ୍ଲେଖଯୋଗ୍ୟ ଘଟଣା ଘଟିଲା । ଏଠାକାର ଜଣେ ବିଶିଷ୍ଟ ଲୁଗା ବ୍ୟବସାୟୀ ଓ ଗୁଡ଼ କଳର ମାଲିକ ଭିରୁ ଦାନଜୀ ଜେଠମଲ କଂଗ୍ରେସ କର୍ମୀମାନଙ୍କର ଅନୁରୋଧ ସତ୍ତ୍ୱେ ଲୁଗା ଆମଦାନୀ ଓ ବିକ୍ରୟ ବନ୍ଦ ନ କରିବାରୁ କରୁଣାକର ପାଣିଗ୍ରାହୀ, ହରେନ୍ଦ୍ର ନାଥ ଘୋଷ ଓ ସତ୍ୟେନ୍ଦ୍ର ନାଥ ଡଗରଙ୍କର

ଆହ୍ୱାନ କ୍ରମେ ଉପରୋକ୍ତ ବ୍ୟବସାୟୀଙ୍କର ଗୃହଜଳ କଳରେ ଶ୍ରମିକ-ମାନେ ଧର୍ମଘଟ କରି କାମ ବନ୍ଦ କରି ଦେଲେ । ପୁଣି ସାମାଜିକ ବାସନ୍ଦ ବ୍ୟବସ୍ଥା ଲାଗୁ ହେବା ଯୋଗୁଁ ତାଙ୍କର ଘରେଇ କାମ କରିବା ପାଇଁ ଲୋକ ମିଳିଲେନି । ଧୋବା ଓ ଭଣ୍ଡାରୀ ମଧ୍ୟ ସେମାନଙ୍କ କାମ କଲେ ନାହିଁ । ବାଧ ହୋଇ ସେ ଏକ ବୁଝାମଣାରେ ପହଞ୍ଚିଲେ । ମିଳାମିଶାର ସର୍ତ୍ତ ଅନୁସାରେ ସେ ବିଲାତି ଲୁଗା ଆଣି ବିକ୍ରି କରିବା ବନ୍ଦ କଲେ ଓ ଆର୍ଥିକ ଜୋରିମାନା ମଧ୍ୟ ଦେଲେ । ଏ ସବୁ କାମ ଫଳରେ ଦୀର୍ଘଦିନ ପାଇଁ ବାଲେଶ୍ୱର ଜିଲ୍ଲାକୁ ବିଲାତି ଲୁଗା ବିକ୍ରି ପାଇଁ ଆସି ପାରି ନଥିଲା ।

କୃଷି ପ୍ରଧାନ ଦେଶରେ କୃଷକମାନଙ୍କର ସ୍ୱାର୍ଥରକ୍ଷା କରିପାରିଲେ କଂଗ୍ରେସର ବାର୍ତ୍ତା ପ୍ରଚାର ଓ ସଂଗଠନ ପ୍ରତି ଲୋକଙ୍କୁ ଆକୃଷ୍ଟ କରିବା ସହଜ ହୋଇ ପାରିବ ବୋଲି ଶ୍ରୀ ମହତାବଙ୍କର ଦୃଢ଼ ଧାରଣା ଥିଲା । ତା ଛଡ଼ା ସେତେବେଳେ ବାଲେଶ୍ୱର ଜିଲ୍ଲାର କୃଷକମାନେ ସବୁଠାରୁ ଅବହେଳିତ ଓ ଶୋଷିତ ହେଉଥିଲେ । ତାଙ୍କର କୌଣସି ସାହା ଭରସା ନଥିଲେ ।

ଶ୍ରୀ ମହତାବ ୧୯୨୧ ମସିହାରୁ ଜମିଦାର ଓ ମହାଜନ-ମାନଙ୍କ ଅତ୍ୟାଚାରରୁ ପ୍ରଜାମାନଙ୍କୁ ରକ୍ଷା କରିବା ପାଇଁ ବାଲେଶ୍ୱର ଜିଲ୍ଲାର ବିଭିନ୍ନ ସ୍ଥାନରେ କୃଷକ ସଭାମାନ ଗଠନ କରିଥିଲେ । ଚମାରଗାଁ ଠାରେ ଆରମ୍ଭ ହୋଇଥିବା କୃଷକ ସଙ୍ଗଠନର କାମ ଦୃଢ଼ ନେତୃତ୍ୱର ଅଭାବ ଯୋଗୁଁ ମନ୍ଥର ହୋଇ ଯାଇଥାଏ ।

ଶ୍ରୀ ମହତାବଙ୍କ ସଭାପତିତ୍ୱରେ ଜଳେଶ୍ୱର ନୂଆ ବଜାର ଠାରେ ଏକ କୃଷକ ସଭା ଅନୁଷ୍ଠିତ ହେଲା । ଏଥିରେ ଦେଶ ତଥା

କୃଷକମାନଙ୍କର ବିଭିନ୍ନ ସମସ୍ୟା ଆଲୋଚିତ ହୋଇ ପ୍ରତିକାରର ଉପାୟମାନ ସ୍ଥିର କରା ଯାଇଥିଲା ।

୧୯୨୮ ମସିହା ବେଳକୁ ଶ୍ରୀ କୃଷ୍ଣ ପ୍ରସାଦ ଜେନା ଶ୍ରୀ ହରେକୃଷ୍ଣ ମହତାବଙ୍କୁ ଏହି ଉଦ୍ଦେଶ୍ୟରେ ଚମ୍ପାରଗାଁକୁ ନେଇ ଆସିଲେ । ଶ୍ରୀ ଜେନାଙ୍କ ସଭାପତିତ୍ୱରେ ଏକ ବିରାଟ ସାଧାରଣ ସଭା ଅନୁଷ୍ଠିତ ହୋଇ ପୂର୍ବରୁ ବିଫଳ ହୋଇ ନିଷ୍କ୍ରିୟ ହୋଇ ରହିଥିବା "କୃଷକ ସଭା" ର ପୁନର୍ଗଠନ କରାଗଲା । ଶଚୀନ୍ଦ୍ର ନାଥ ଡଗର (ସରଡିହା) ଏହାର ସଭାପତି ଓ ଶ୍ରୀ ବିଦ୍ୟାଧର ଭୂୟାଁ (ଗୃଫଲା) ସମ୍ପାଦକ ନିର୍ବାଚିତ ହେଲେ । ଶ୍ରୀ ମହତାବଙ୍କର ସମୟୋପଯୋଗୀ ବଳିଷ୍ଠ ମାର୍ଗଦର୍ଶନରେ ସଂଗଠନ ସୁଦୃଢ଼ ହେଲା । ଜମିଦାରମାନଙ୍କର ଅନ୍ୟାୟ ନିୟମ ବିରୋଧରେ ଆନ୍ଦୋଳନ ଏଥର ସଫଳ ହେଲା । ଶେଷରେ ଜମିଦାର-ମାନେ ପ୍ରଜାମାନଙ୍କର ଅନେକ ଦାବୀ ମାନିନେଲେ । ସେମାନଙ୍କ ଉପରେ ଚାଲିଥିବା ଅତ୍ୟାଚାର ବନ୍ଦ ହେଲା । ଜମିଜମାର ରେକର୍ଡ଼ ପତ୍ର ଜମିଦାରମାନେ ଠିକ୍ ଭାବରେ ରଖିଲେ । ଜଙ୍ଗଲ ଜାତ ଦ୍ରବ୍ୟର ବ୍ୟବହାର ଉପରେ ସେମାନେ ଜାରି କରିଥିବା କଟକଣା ସବୁକୁ ମଧ୍ୟ କୋହଳ କରିଦେଲେ ।

ଏହାର ସଫଳତାରେ ସମସ୍ତେ ଉତ୍ସାହିତ ହେଲେ । ଶ୍ରୀ ମହତାବ ଏ ଆନ୍ଦୋଳନକୁ କେବଳ ଜମିଦାର-ମହାଜନ ବିରୋଧୀ ଆନ୍ଦୋଳନରେ ସୀମିତ ନ ରଖି ଜାତୀୟ ଆନ୍ଦୋଳନରେ ଏକ ଅଂଶରେ ପରିଣତ କରି ଦେଲେ । ସ୍ୱାଧୀନତା ଆନ୍ଦୋଳନ ତୀବ୍ର ହୋଇ ଉଠିଲା ଏ ଅଞ୍ଚଳରେ ।

୧୯୨୮ ମସିହାରେ ସାଇମନ କମିଶନ ଭାରତ ଆସିଲେ । ମାତ୍ର ଗାନ୍ଧିଜୀଙ୍କ ନେତୃତ୍ୱରେ ଭାରତୀୟମାନେ ଏହାର ବିରୋଧ କଲେ । ଏ କମିଶନ ଭାରତର ଯେଉଁ ସ୍ଥାନକୁ ଗଲେ, ସେଠାରେ ଲୋକେ କଳା ପତାକା ଦେଖାଇ ଧର୍ମଘଟ କରି ସେମାନଙ୍କୁ ବିରୋଧ କଲେ । ସେହି ବର୍ଷ ଅକ୍ଟୋବର ୨୮ ତାରିଖରେ ଲାହୋର ଠାରେ ସାଇମନ କମିଶନ ବିରୋଧୀ ଆନ୍ଦୋଳନରେ ନେତୃତ୍ୱ ନେଇ ସତ୍ୟାଗ୍ରହ କରୁଥିବା ଲାଲା ଲାଜପତ୍ ରାୟଙ୍କ ଛାତିରେ ସ୍କଟ୍ ନାମକ ଜଣେ ଗୋରା ପୋଲିସ ଅଫିସର ଲାଠି ପ୍ରହାର କଲା । ଫଳରେ ତାର ଅଳ୍ପ ଦିନ ପରେ ନଭେମ୍ବର ୮ ତାରିଖରେ ସେ ମୃତ୍ୟୁବରଣ କଲେ । ଦେଶ ଦୁଃଖରେ ମ୍ରିୟମାଣ ହୋଇ ପଡିଲା ।

୧୯୨୯ ମସିହା ବେଳକୁ ଖାଇବଣିଆ ଅଞ୍ଚଳରେ ଆର୍ଥିକ ଅବସ୍ଥା ଅତ୍ୟନ୍ତ ଖରାପ ହୋଇଗଲା । ସେତେବେଳକୁ ସାରା ପୃଥିବୀରେ ଆର୍ଥିକ ମାନ୍ଦାବସ୍ଥା (Depression) ଆରମ୍ଭ ହୋଇ ଯାଇଥାଏ । ତାର ପରିଣାମ ସ୍ୱରୂପ କୃଷିଜାତ ଦ୍ରବ୍ୟର ମୂଲ୍ୟ ଦ୍ରୁତ ଗତିରେ ହ୍ରାସ ପାଇଗଲା । ଧାନ, ମୁଗ, ବିରି ଓ ଆଖୁ ଚାଷ କରୁଥିବା ଲୋକମାନଙ୍କର କରୁଣ ଅବସ୍ଥା ଅବର୍ଣ୍ଣନୀୟ । ଆଖୁ ଚାଷୀମାନେ ଆଖୁ ପେଡ଼ି ଗୁଡ଼ ଅମଳ କରି ସାରିବା ବେଳକୁ ଘରୁ ଭାତ ସରି ଯାଉଥାଏ । ସେତେବେଳେ ଘରେ ମଜ୍ଜୁରୀ ରଖି ହାତ ପେଷଣୀ ମେସିନରେ ଆଖୁରୁ ରସ ବାହାର କରି ଗୁଡ଼ ମରାଯାଉଥାଏ । ପୁଣି ଗୁଡ଼ର ବିକ୍ରି ଦାମ ମଧ୍ୟ ଅନେକ କମ୍ । ଧାନ, ମୁଗ ଓ ଗୁଡ଼ର ବିକ୍ରି ପାଇଁ ଚାଷୀମାନେ ସୁଦୂର ବାଲିଘାଇ ଓ କାନ୍ଥି ପ୍ରଭୃତି ମେଦିନୀପୁର ଜିଲ୍ଲାର ବିଭିନ୍ନ ସ୍ଥାନକୁ ଯାଉଥିଲେ । ବଳଦ ପିଠିରେ ଜିନିଷ ଲଦି ଏତେଦୂର ଜାଗାକୁ ଯାଇ ଜିନିଷ ବିକ୍ରି କରି ଫେରିବା ସମୟରେ ସେମାନଙ୍କର କରୁଣ ଅବସ୍ଥା ଆଖିରେ

ନ ଦେଖିଲେ ବିଶ୍ୱାସ କରି ହେବନି । ପୁଣି ଜିନିଷ ନେଇ ପହଞ୍ଚିବା ପରେ ବେପାରୀମାନଙ୍କର ଦୌରାତ୍ମ୍ୟ ଆରମ୍ଭ ହୋଇ ଯାଉଥାଏ । ପ୍ରଚଳିତ ଦର ଠାରୁ କମ୍ ଦାମ୍‌ରେ ମଧ୍ୟ ସେମାନେ ବେଳେବେଳେ ଜିନିଷ ବିକି କରିବା ପାଇଁ ଚାଷୀଙ୍କୁ ବାଧ କରନ୍ତି । ଏତେ ଦୂର ବାଟକୁ ଜିନିଷ ନେଇ ପୁଣି ଘରକୁ ଜିନିଷ ଫେରାଇ ଆଣିବା ମଧ୍ୟ ସହଜ କଥା ନୁହେଁ । ଫେରାଇ ଆଣିଲେ ବା ବିକି କରିବେ କେଉଁଠି ?

ସେତେବେଳେ କୃଷକମାନଙ୍କୁ ସାହାଯ୍ୟ କରିବା ପାଇଁ କେତେକ ସମବାୟ ସମିତି ଗଠନ କରା ଯାଇଥିଲା । ସେଥି ମଧ୍ୟରୁ ତମାରଗାଁ ଓ ଚାଫଲା କୃଷି ସମବାୟ ସମିତିଗୁଡ଼ିକ ମୁଖ୍ୟ ଥିଲା । ମାତ୍ର ଏ ସମବାୟ ସମିତିମାନଙ୍କରୁ ଋଣ ନେଇ ଅଧିକାଂଶ ଚାଷୀ ଋଣ ପରିଶୋଧ କରି ପାରିଲେନି । କାରଣ ସେଇ କୃଷି ଜାତ ଦ୍ରବ୍ୟର ମୂଲ୍ୟ ଦ୍ରୁତ ଗତିରେ ହ୍ରାସ ପାଉଥିଲା । ଫଳରେ ଋଣ ଖିଲାପି ହୋଇଯିବା ଯୋଗୁଁ ନିୟମତଃ ସେମାନଙ୍କର କ୍ଷେତ ଜମି ସବୁ ନିଲାମ ହୋଇଗଲା । ଲୋକେ ଉଚ୍ଛନ୍ନ ହୋଇଗଲେ । ଋଣ ଆଦାୟ ବନ୍ଦ କରିବା ପାଇଁ ଯେତେ ଅନୁରୋଧ କରାଗଲେ ମଧ୍ୟ କର୍ତ୍ତୃପକ୍ଷ ସେଥିପ୍ରତି କର୍ଣ୍ଣପାତ କଲେ ନାହିଁ । ସେତେବେଳେ କଂଗ୍ରେସ କର୍ମୀମାନେ ସମବାୟ ଋଣୀମାନଙ୍କୁ ସଂଗଠିତ କରି ଋଣ ପରିଶୋଧର ବିଭିନ୍ନ ଉପାୟ ବାହାର କରି ସେମାନଙ୍କୁ ସାହାଯ୍ୟ କରିଥିଲେ ।

୧୯୨୯ ମସିହାରେ ସାରା ଦେଶରେ ପ୍ରସ୍ତୁତି ପର୍ବ ଚାଲିଲା । ଆଗାମୀ ସଂଗ୍ରାମ ପାଇଁ କଂଗ୍ରେସ ନିଜକୁ ପ୍ରସ୍ତୁତ କଲା । ନିଶା ନିବାରଣ, ବିଦେଶୀ ଜିନିଷ ବର୍ଜନ ଓ ଅସ୍ପୃଶ୍ୟତା ନିବାରଣ ଇତ୍ୟାଦି କାମ ଚାଲୁ ରହିଥାଏ । ବର୍ଷ ଶେଷରେ ଲାହୋର କଂଗ୍ରେସ

ଅଧିବେଶନରେ ସଭାପତି ପଣ୍ଡିତ ଜବାହରଲାଲ ନେହେରୁ ପୂର୍ଣ୍ଣ ସ୍ୱାଧୀନତା ଲାଭ କଂଗ୍ରେସର ଲକ୍ଷ୍ୟ ବୋଲି ଘୋଷଣା କଲେ । ଦେଶରେ ଏକ ବିଦ୍ୟୁତ ସ୍ରୋତ ପ୍ରବାହିତ ହେଲା । ଚମକ ଖେଳିଗଲା । ଦେଶବାସୀ ନୂତନ ଉତ୍ସାହରେ ୧୯୩୦ ଜାନୁୟାରୀ ୨୬ ତାରିଖ ଦିନଟିକୁ ପୂର୍ଣ୍ଣ ସ୍ୱରାଜ୍ୟ ଦିବସ ଭାବରେ ପାଳନ କଲେ । ବାଲେଶ୍ୱର ଠାରେ ସେହିଦିନ ଶ୍ରୀମହତାବ ଓ ନନ୍ଦ କିଶୋର ଦାସ ପ୍ରଭୃତି ସ୍ୱରାଜ୍ୟ ଦିବସ ପାଳନ କରି ପତାକା ଉତ୍ତୋଳନ କଲେ ଓ ଏକ ଶୋଭାଯାତ୍ରାରେ ସହର ପରିକ୍ରମା କଲେ । ଜଳେଶ୍ୱରର ବିଭିନ୍ନ ସ୍ଥାନରେ ଓ ରାଇବଣିଆ ଅଞ୍ଚଳର ରାଇବଣିଆ, ଚମାର ଗାଁ, ଖୁଆଡ଼, ଦକ୍ଷିଣ କୃଷ୍ଣରାଜପୁର, ଗୃଫଲା, ବରଡିହା ଓ ଖୁଆଡ଼ ଠାରେ ପୂର୍ଣ୍ଣ ସ୍ୱରାଜ୍ୟ ସଂକଳ୍ପ ଦିବସ ଅତି ଉତ୍ସାହର ସହିତ ପାଳିତ ହେଲା । ଶହ ଶହ ଲୋକ ଶପଥ ଗ୍ରହଣ କଲେ । ସେତେବେଳେ କଂଗ୍ରେସର ସଭ୍ୟ ହେବା ପାଇଁ ଏକ ଲିଖିତ ଫର୍ମରେ ଦସ୍ତଖତ କରିବାକୁ ପଡ଼ୁଥାଏ । ସେଥିରେ ଲେଖା ଥାଏ .. "ମୁଁ ଶାନ୍ତିପୂର୍ଣ୍ଣ ଓ ନ୍ୟାଯ୍ୟ ସଙ୍ଗତ ଉପାୟରେ ସ୍ୱରାଜ୍ୟ ପ୍ରାପ୍ତିରେ ବିଶ୍ୱାସ କରେଁ ।" ସଭ୍ୟ ଚାନ୍ଦା ଥିଲା ଚାରିଅଣା ଓ ସଭ୍ୟ ପାଇଁ ସର୍ବନିମ୍ନ ବୟସ ସୀମା ୧୮ ବର୍ଷ ଥିଲା । ତାଠାରୁ କମ୍ ବୟସର ପିଲାମାନେ ବାନର ସେନାରେ ଯୋଗ ଦେଉଥିଲେ ।

ଇଂରେଜ ସରକାରଙ୍କ ଆର୍ଥିକ ଭିତ୍ତିଭୂମିକୁ ଦୋହଲାଇ ଦେବାକୁ ଗାନ୍ଧିଜୀ ଚିନ୍ତା କରୁଥାନ୍ତି । ବିଦେଶୀ ବସ୍ତ୍ର ଓ ଅନ୍ୟାନ୍ୟ ଜିନିଷ ବର୍ଜନ ଆନ୍ଦୋଳନ ଯୋଗୁଁ ଇଂଲଣ୍ଡର ଶିଳ୍ପପତିମାନେ ଭାରତୀୟ ବଜାର ହରାଇ ଘୋର ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ସେତେବେଳେ ଇଂଲଣ୍ଡରୁ ଲୁଣ ଆଣି ଭାରତରେ ବିକ୍ରି କରା ଯାଉଥିଲା ଭାରତର ଜନସାଧାରଣ ସମୁଦ୍ରର ଲବଣାକ୍ତ ଜଳ ଦେଇ ରହିଥିଲେ ମଧ୍ୟ ସରକାରଙ୍କର ବିନାନୁମତିରେ ଲୁଣ ମାରିବାର ଅଧିକାର

ଭାରତୀୟମାନଙ୍କର ନ ଥିଲା । ପୁନଶ୍ଚ ଭାରତ ତିଆରି ଲୁଣ ଉପରେ ଟିକସ ବସା ଯାଇଥିବାରୁ ତାହାର ଦାମ ଯଥେଷ୍ଟ ବଢ଼ି ଯାଇଥାଏ । ଅଥଚ ବିଲାତରୁ ଆମଦାନୀ କରାଯାଉଥିବା ଲୁଣ କମ୍ ଦାମରେ ଭାରତରେ ବିକ୍ରି ହେଉଥିବାରୁ ଭାରତର ଲବଣ ଶିଳ୍ପ ଉଠେଇ ପାରିଲାନି । ଏହା ଉପରେ ନିର୍ଭର କରି ଚଳୁଥିବା ଲୋକେ ବେକାର ହୋଇଗଲେ । ଲୋକଙ୍କର ଆର୍ଥିକ ମେରୁଦଣ୍ଡ ଭାଙ୍ଗିଗଲା । ବାରମ୍ବାର ଦାବୀ କରିବା ସତ୍ତ୍ୱେ ସେ ଆଇନ ପ୍ରତ୍ୟାହୃତ ନ ହେବାରୁ ଗାନ୍ଧିଜୀ ସେ ଆଇନକୁ ଅମାନ୍ୟ କରିବାକୁ ନିଷ୍ପତ୍ତି ନେଲେ । ଫେବୃୟାରୀ ୧୫ ଓ ୧୬ ତାରିଖରେ ସାବରମତୀ ଆଶ୍ରମ ଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ବସି ଲବଣ ସତ୍ୟାଗ୍ରହ ପାଇଁ ଗାନ୍ଧିଜୀଙ୍କୁ ପୂର୍ଣ୍ଣ କ୍ଷମତା ଦିଆଗଲା ।

୧୯୩୦ ଏପ୍ରିଲ ୬ ତାରିଖରେ ଗୁଜୁରାଟର ଦାଣ୍ଡି ଠାରେ ଲବଣ ଆଇନ ଅମାନ୍ୟ କରିବାକୁ ଗାନ୍ଧିଜୀ ସ୍ଥିର କଲେ । ମାର୍ଚ୍ଚ ୧୨ ତାରିଖ ଦିନ ସକାଳ ପ୍ରାର୍ଥନା ସାରି ୭୮ ଜଣ ସତ୍ୟାଗ୍ରହୀଙ୍କ ସହିତ ସାବରମତୀ ଆଶ୍ରମରୁ ଗାନ୍ଧିଜୀ ଦାଣ୍ଡି ଅଭିମୁଖେ ବାହାରିଲେ । ଓଡ଼ିଶାର ୨୨ ବର୍ଷର ଯୁବକ ମୋତିବାସ ଦାସ ସାବରମତୀ ଆଶ୍ରମରେ ଥିଲେ । ଗାନ୍ଧିଜୀଙ୍କର ଏହି ଯୁଗାନ୍ତକାରୀ ପଦଯାତ୍ରାରେ ସର୍ବ କନିଷ୍ଠ ସଭ୍ୟ ଭାବରେ ଯୋଗଦେବାର ସୌଭାଗ୍ୟ ତାଙ୍କୁ ମିଳିଥିଲା । ଏହା ଐତିହାସିକ ଦାଣ୍ଡି ଯାତ୍ରା ନାମରେ ବିଖ୍ୟାତ । ୨୪ ଦିନପରେ ୨୦୦ ମାଇଲ ପଥ ଅତିକ୍ରମ କରି ଏପ୍ରିଲ ୫ ତାରିଖ ଦିନ ଗାନ୍ଧିଜୀ ଦାଣ୍ଡି ଠାରେ ପହଞ୍ଚିଲେ । ସେତେବେଳକୁ ତାଙ୍କ ସାଥିରେ ହଜାର ହଜାର ସତ୍ୟାଗ୍ରହୀ, ସାଧାରଣ ଜନତା ଯୋଗ ଦେଇଥିଲେ । ସାରା ଦେଶରେ ଜାତୀୟଭାବର ଉନ୍ମାଦନା ଖେଳି ଯାଇଥାଏ । ଏପ୍ରିଲ ୬ ତାରିଖ

ସକାଳୁ ଗାନ୍ଧିଜୀ ଅନ୍ୟମାନଙ୍କୁ ସାଥୀରେ ନେଇ ସମୁଦ୍ରରେ ବୁଡ଼ ପକାଇ ଆସି ଖୁଲଟରେ ଥିବା ମାଟିରୁ ଟିକିଏ ଲୁଣ ସାଉଁଟି ଆଣିଲେ । ଉପସ୍ଥିତ ଜନତା ତଥା ସମଗ୍ର ଭାରତବର୍ଷରେ ଉଦ୍‌ବେଜନ ଦେଖାଦେଲା । ଚାରିଆଡ଼ ସମୁଦ୍ରରୁ ଲୁଣ ମରା ଚାଲିଲା । ସରକାରୀ ଅତ୍ୟାଚାର ଓ ଦମନ ନୀତି ବଢ଼ିଲା । ଲକ୍ଷ ଲକ୍ଷ ଲୋକ ଗିରଫ ହେଲେ । ଅନେକ ଭାରତୀୟ ସରକାରୀ ଚାକିରୀ ଛାଡିଲେ, ବିଧାନ ସଭା ଓ କେନ୍ଦ୍ରୀୟ ବିଧାନ ପରିଷଦରୁ ମଧ୍ୟ ଇସ୍ତଫା ଦେଲେ ।

ଓଡ଼ିଶାରେ ଲବଣ ସତ୍ୟାଗ୍ରହ ବା 'ଦରିଆ ଦଖଲ' ଆନ୍ଦୋଳନ ଅତି ଉଗ୍ର ଆକାର ଧାରଣ କରିଥିଲା । ୧୯୩୦ ମାର୍ଚ୍ଚ ୧୫ ତାରିଖରେ ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟି ବାଲେଶ୍ୱରରେ ବସି ଓଡ଼ିଶା ଉପକୂଳରେ ଏ ଆଇନକୁ ଭାଙ୍ଗିବାକୁ ସ୍ଥିର ହେଲା । ଏଥିପାଇଁ ବାଲେଶ୍ୱର ଠାରୁ ୧୨ ମାଇଲ ଦୂରରେ ଥିବା ଇଞ୍ଚୁଡ଼ି ଗ୍ରାମକୁ ବଛାଗଲା । ହରେକୃଷ୍ଣ ମହତାବ ଗାଁକୁ ଗାଁ ବୁଲି କର୍ମୀମାନଙ୍କୁ ଏକଜୁଟ କରି ପରିସ୍ଥିତି ଓ ପରିବେଶକୁ ଆନ୍ଦୋଳନ ଅଭିମୁଖୀ କରିଦେଲେ । ଏପ୍ରିଲ ୬ ତାରିଖରେ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ୨୧ ଜଣ ସତ୍ୟାଗ୍ରହୀ କଟକରୁ ବାହାରି ଇଞ୍ଚୁଡ଼ି ଅଭିମୁଖେ ଆସୁଥିବା ବେଳେ ବାଟରେ ଶ୍ରୀ ଚୌଧୁରୀଙ୍କୁ ପୋଲିସ ଗିରଫ କରିନେଲା । ଏହାପରେ ଆଚାର୍ଯ୍ୟ ହରିହର ଦାସ ଏହାର ନେତୃତ୍ୱ ନେଲେ । ଇଞ୍ଚୁଡ଼ିଠାରେ ଏପ୍ରିଲ ୧୪ ତାରିଖରେ ଲବଣ ଆଇନ ଭଙ୍ଗ କରି ସେ ଲୁଣ ସଂଗ୍ରହ କଲେ । ୧୯୩୦ ଏପ୍ରିଲ ୨୦ ତାରିଖରେ ରମାଦେବୀ ଓ ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ଓଡ଼ିଶାର ମହିଳାମାନେ ଲବଣ ଆଇନ ଅମାନ୍ୟ କରି ପୋଲିସର ଲାଠିମାଡ଼ ଖାଇଲେ ଓ ଜେଲଗଲେ । ଏ ଘଟଣା ସାରା ଦେଶରେ ଚହଳ ପକାଇ ଦେଲା ।

କରୁଣାକର ପାଣିଗ୍ରାହୀ, ନୀଳାମ୍ବର ଦାସ, ବିଶ୍ୱନାଥ ହୋତା ଓ ମଥୁରା ମୋହନ ବେହେରା ପ୍ରଭୃତି ବାସୁଦେବପୁର ଠାରୁ ବସ୍ତା ଏବଂ ଖେଗରାଇର ସମୁଦ୍ର କୂଳ ଯାଏଁ ଏ ଆନ୍ଦୋଳନକୁ ତୀବ୍ର କରିଦେଲେ । ଶହ ଶହ କର୍ମୀ ଗିରଫ ହେଲେ । ବାଇବଣିଆ ଅଞ୍ଚଳରୁ ସତ୍ୟେନ୍ଦ୍ର ନାଥ ଭଗତଙ୍କ ନେତୃତ୍ୱରେ ରାଖାଲ ଚନ୍ଦ୍ର ସିଂ, ଗୋବିନ୍ଦ ଚନ୍ଦ୍ର ପାଠୀ, ପଦ୍ମନାଭ ବାରିକ ଓ ତାଙ୍କର ସ୍ତ୍ରୀ ସରସ୍ୱତୀ ବାରିକ ତଥା ଗଙ୍ଗାଧର ଗିରି ପ୍ରଭୃତି କର୍ମୀମାନେ ଇଞ୍ଚୁଡ଼ିଠାରେ ଲବଣ ଆଇନ ଭଙ୍ଗ କରି ଲୁଣ ସଂଗ୍ରହ କରିଥିଲେ । କେବଳ ସେତିକି ନୁହେଁ, ନୀଳାମ୍ବର ଦାସଙ୍କ ପରାମର୍ଶ କ୍ରମେ ଗୋବିନ୍ଦ ଚନ୍ଦ୍ର ପାଠୀ ଓ ପଦ୍ମନାଭ ବାରିକ ଇଞ୍ଚୁଡ଼ି ଓ ସାରଥା ଲୁଣ ମାରା କେନ୍ଦ୍ରରେ ପ୍ରଚୁର ପରିମାଣ ବଣ୍ଟନ ଓ ବିପ୍ଳବର ବାର୍ତ୍ତା ପ୍ରଚାର କରି ଲୋକଙ୍କ ଭିତରେ ଜାଗରଣ ସୃଷ୍ଟି କରୁଥିଲେ । ସେତେବେଳେ ସଂଗ୍ରାମୀମାନେ ଗାଉଥିଲେ—

'ଚାଲ ଭାଇ ଲୁଣ ମାରିବା
ଗାନ୍ଧିଜୀଙ୍କ ଆଜ୍ଞା ପାଳନ କରିବା ।
ଆମ ଘର ପାଖରେ ଲୁଣ
ନ ଜାଣିଲୁ ତାହାର ଗୁଣ
ଲିଭରପୁଲର ଲୁଣ ଖାଇ ଖାଇ
କେତେଦିନ ଆଉ ଦେହ ଧରିବା ।
ଲୁଣ ଆମ ଜୀବନ ସାର
ଲୁଣ ବିନା ସବୁ ଅସାର
ପଖାଳ, ଭାତରେ ଲୁଣ ଟିକେ ହେଲେ
ଭୁଲିଯାଉ ମାଛ, ଆଳୁ, ପରିବା ।
ଉଠାଇବା ନିମକ କୋଠୀ
ହରିବାନ ବନ୍ଧୁକ ଲାଠି
ଜେଲଖାନା ହେବ ଆମ ଶ୍ରୀ ମନ୍ଦିର
ଦେଶଲାଗି ହସି ହସି ବରିବା ।'

ପୋଲିସ ଆଖିରେ ଧୂଳିଦେଇ ସୁରେନ୍ଦ୍ର ନାଥ ଦାସ ଓ ଅନ୍ୟ କେତେଜଣ ପଳାଇ ଯାଇ ବାଲେଶ୍ୱର ନିକଟବର୍ତ୍ତୀ ଫରାସୀ ଡ଼ଙ୍ଗାରେ ଆଶ୍ରୟ ନେଲେ । ସେଠାରେ ସେ କଂଗ୍ରେସ କାର୍ଯ୍ୟାଳୟ ଖୋଲିଲେ । ଉପଯୁକ୍ତ ଯୁବକ ମାନଙ୍କୁ ବାଛି ଅହିଂସା ଆନ୍ଦୋଳନ ଚଳାଇ ରଖିବା ପାଇଁ ଉପଯୁକ୍ତ କରିବା ନିମନ୍ତେ ସେଠାରେ ସେ " ସାହସୀ ସୈନିକ ପ୍ରଶିକ୍ଷଣ କେନ୍ଦ୍ର" ଖୋଲିଲେ । ପୁନଶ୍ଚ ବନ୍ଦୀ ମାନଙ୍କର ଡାକ ନେବା ଆଣିବା କରିବା ନିମନ୍ତେ ସେ ଏକ ଗୁପ୍ତ "ଡାକ ସେନା ବାହିନୀ" ଗଠନ କରି ଉତ୍ସାହୀ ଯୁବକ ମାନଙ୍କୁ ଆବଶ୍ୟକ ତାଲିମ ଦେଉଥିଲେ । ଏ ଅଞ୍ଚଳ ଫରାସୀ ଅଧିକୃତ ଅଞ୍ଚଳ ହୋଇଥିବାରୁ ଫ୍ରାନ୍ସ ସରକାରଙ୍କ ବିନା ଅନୁମତିରେ କାହାରିକୁ ସେଠାରୁ ଗିରଫ କରିବା ଇଂରେଜ ପୋଲିସଙ୍କ ପକ୍ଷରେ ସମ୍ଭବ ହେଉ ନ ଥିଲା । ଲବଣ ସତ୍ୟାଗ୍ରହ ସମୟରେ ଅପୂର୍ବ ସାଂଗଠନିକ ଶକ୍ତିର ପରିଚୟ ଦେଇଥିବାରୁ ଲୋକେ ସୁରେନ୍ଦ୍ର ନାଥ ଦାସଙ୍କୁ "ସର୍ଦ୍ଦାର" ଉପାଧିରେ ଭୂଷିତ କରି "ସର୍ଦ୍ଦାର ସୁରେନ୍ଦ୍ର" ନାମରେ ଡାକିଲେ ।

ସେଠାରୁ ଲିଥୋରେ ଛପାଯାଇ "ରଣଭେରୀ" ନାମକ ଏକ ସାପ୍ତାହିକ ବୁଲେଟିନ ସମଗ୍ର ଜିଲ୍ଲାରେ ବାଣ୍ଟିବାର ବନ୍ଦୋବସ୍ତ କରାଯାଇଥିଲା । ତାଲିମ ପ୍ରାପ୍ତ ଯୁବକ ମାନେ ଡାକ ଓ ବୁଲେଟିନକୁ ନେଇ ବିଭିନ୍ନ ସ୍ଥାନରେ ସତ୍ୟାଗ୍ରହୀ ମାନଙ୍କୁ ଦିଅନ୍ତି । ଏଥିରେ ଲବଣ ସତ୍ୟାଗ୍ରହର ବିଶଦ ବିବରଣୀ ପ୍ରକାଶିତ ହୁଏ । ଆଗାମୀ ଦିନର କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ଆହ୍ୱାନ ଦିଆଯାଏ । ଲୋକେ ତାହାକୁ ପଢି ନୂଆ ଉଦ୍ଦୀପନା ଓ ଉତ୍ସାହରେ ଆନ୍ଦୋଳନରେ ମାତି ଯାଆନ୍ତି ।

ଗଜେନ୍ଦ୍ର ନାଥ ସାହୁ ନାମକ ଜଣେ କର୍ମୀ ନଜେ 'ରଣଭେରୀ' ବୁଲେଟିନ ଲିଥୋ କାଗଜରେ ଲେଖନ୍ତି। ସକାଳୁ ରମେନ୍ଦ୍ର ମୋହନ ଦାସ ଓ ଅନ୍ୟ କର୍ମୀମାନେ ସେସବୁ ଆଣି ବାଲେଶ୍ୱର ସହରରେ ବାଣ୍ଟନ୍ତି ଓ ଜିଲ୍ଲାର ଅନ୍ୟ ସ୍ଥାନକୁ ପଠାନ୍ତି।

ବିଭିନ୍ନ ମାଧ୍ୟମରେ ଜଳେଶ୍ୱରକୁ ଅଳ୍ପ କେତେଖଣ୍ଡ 'ରଣଭେରୀ' ବୁଲେଟିନ୍ ଆସେ। ପ୍ରଥମେ ଗୋପ ଗ୍ରାମର ହରେନ୍ଦ୍ର ନାଥ ଘୋଷ ପାଆନ୍ତି। ରାମନ୍ନପୁରର ଗୋବିନ୍ଦ ଗିରି ଓ ମଥୁରାନାଥର ଅବିନାଶ ବେହେରା ଏହାକୁ ନେଇ ରାଇବଣିଆ ଅଞ୍ଚଳର କର୍ମୀମାନଙ୍କ ଭିତରେ ବାଣ୍ଟି ଦିଅନ୍ତି। ଜଣେ ପଢ଼ିସାରି ଅନ୍ୟ ଜଣକୁ ଦିଏ। ଏମିତି ଏ ହାତରୁ ସେ ହାତକୁ ବଦଳ ହୋଇ ସମଗ୍ର ଫତେଆବାଦ ପ୍ରଗଣାରେ ଏହାର ବାର୍ତ୍ତା ପ୍ରଚାରିତ ହୁଏ। ଏ ପତ୍ରିକାକୁ ଲୁଚାଇ କରି ପଢ଼ାଯାଏ ଓ ଲୁଚାଇ କରି ରଖାଯାଏ। ଚୌକିଦାର, ଦଫାଦାର, ପୋଲିସ ବା ପୋଲିସର ଗୁପ୍ତଚର ଜାଣି ପାରିଲେ ଆଉ ରକ୍ଷା ନାହିଁ। ମାଡ଼ ଖାଇବା ସଙ୍ଗେ ସଙ୍ଗେ ଗିରଫ ହେବାର ଆଶଙ୍କା ସବୁବେଳେ ରହିଥାଏ। ଲିଥୋରେ ଗୁପ୍ତରେ ଛପାଯାଇ କଟକରୁ 'ବିଦ୍ରୋହୀ' ନାମରେ ଅନ୍ୟ ଏକ ବୁଲେଟିନ ପ୍ରକାଶ ପାଉଥାଏ। ଏଥିରେ ଲବଣ ସତ୍ୟାଗ୍ରହର ସମସ୍ତ ବିବରଣୀ ସ୍ଥାନିତ ହେଉଥିଲା।

ସାରା ଭାରତ ବର୍ଷରେ 'ଦାଣ୍ଡି' ପରେ ଇଞ୍ଚୁଡ଼ି ଦ୍ୱିତୀୟ ଲବଣ ସତ୍ୟାଗ୍ରହ କେନ୍ଦ୍ରରେ ପରିଣତ ହେଲା। ଏ ଆନ୍ଦୋଳନର ତୀବ୍ରତାକୁ ବିଚାର କଲେ ଓଡ଼ିଶାରେ ଇଞ୍ଚୁଡ଼ି ପ୍ରଥମ, ସାରଥା ଦ୍ୱିତୀୟ ଓ ବୋଲଙ୍ଗ ତୃତୀୟ ସ୍ଥାନ ଅଧିକାର କରିଥିଲା।

ଜଳେଶ୍ୱର ବଜାରରେ ପ୍ରଚୁର ପରିମାଣରେ ଦେଶୀ ଲୁଣ ଆସି ବିକ୍ରି ହେବାରେ ଲାଗିଲା। ପୋଲିସ ଜୁଲୁମ କରି ସେ ଲୁଣକୁ

ସବୁ ନଷ୍ଟ କରି ବନ୍ଦି କରୁଥିବା ଓ କିଣୁଥିବା ଲୋକଙ୍କୁ ମାଡ଼ ଦେଉଥାଏ, ଗିରଫ କରୁଥାଏ । ମାତ୍ର ଜାତୀୟ ଭାବରେ ଉଦ୍‌ବୁଦ୍ଧ, ଆଉ ହରାଇଥିବା ହକ୍ ଅଧିକାରକୁ ଫେରି ପାଇବାର ସମ୍ଭାବନାରେ ଭରପୂର ଏ ଉତ୍ସାହକୁ ସରକାର ଜୋର ଜୁଲୁମ କରି ଅଟକାଇ ପାରିଲେ ନାହିଁ । ଲୋକେ ଅତ୍ୟାଚରିତ ହେଲେ ସିନା, ଅଧିକାର ହରାଇଲେ ନାହିଁ । ସଡ଼କ ପଥ ବ୍ୟତୀତ ଚନ୍ଦବାଲି ଓ ସୁବର୍ଣ୍ଣରେଖାର ନଦୀପଥ ଦେଇ ଦେଶୀ ଲୁଣ ଆସି ଗାଁ ଗାଁରେ ବନ୍ଦି ହେଲା । ଖାଉନ୍ତିମାନେ ନିଜେ ଯାଇ ଘରେ ବା ବଳଦ ପିଠିରେ ଲଦ ସମୁଦ୍ର କୂଳ ଗାଁମାନଙ୍କରୁ ଦେଶୀ ଲୁଣ ନେଇ ଆସିଲେ ।

କେବଳ ଲୁଣ ମାରିବାରେ ଏ ଆନ୍ଦୋଳନ ସୀମିତ ନ ଥିଲା । ତା ସାଙ୍ଗକୁ ସ୍ୱଦେଶୀ ଦ୍ରବ୍ୟ ବର୍ଜନ, ନିଶା ନିବାରଣ ଓ ସନ୍ଦେହସ୍ଥ ଆଇନ ଅମାନ୍ୟ ଆନ୍ଦୋଳନ ମଧ୍ୟ ଚାଲୁ ରହିଥାଏ । ସରକାର ଅତି ନିଷ୍ଠୁର ଭାବରେ ଏ ଆନ୍ଦୋଳନକୁ ଦବାଇ ଦେବାକୁ ଚେଷ୍ଟା କରି ମଧ୍ୟ ସଫଳ ହୋଇ ପାରିଲେ ନାହିଁ । ବରଂ ଲୋକେ ଚୌକିଦାରୀ ଟିକସ ଦେବା ବନ୍ଦ କରିଦେଲେ । ଜେଲ, ଜୋରିମାନା, ପିଟୁଣି ଟିକସ ଓ ଲାଠିମାଡ଼ ସତ୍ତ୍ୱେ ଆନ୍ଦୋଳନ ତୀବ୍ର ହେବାରେ ଲାଗିଲା । ସରକାର 'ସମାଜ' ଓ 'ପ୍ରଜାତନ୍ତ୍ର' ସମ୍ବାଦ ପତ୍ର ଦୁଇଟିକୁ ଜାମିନ ମାଗିବାରୁ ତାର ପ୍ରତିବାଦ କରି ପତ୍ରିକାଗୁଡ଼ିକର କର୍ତ୍ତୃପକ୍ଷ ସେଗୁଡ଼ିକର ପ୍ରକାଶନ ନିଜ ତରଫରୁ ବନ୍ଦ କରିଦେଲେ ।

ଏ ଆନ୍ଦୋଳନ ଜାରି ରହିଲା ବର୍ଷା ଋତୁଯାଏଁ, ଯେତେବେଳେ କି ଏହା ଆପେ ଆପେ ଧିମେଇ ଗଲା । ୧୯୩୧ ଜାନୁୟାରୀରେ ଓଡ଼ିଶା ଉପକୂଳରେ ପୁନର୍ବାର ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇ ମାର୍ଚ୍ଚ ମାସ ଯାଏଁ ଚାଲୁ ରହିଥିଲା ।

ଗରଣିଷ୍ଠମାନଙ୍କର ଲୁଣ ମାରିବା ଉପରେ ଯେଉଁ କଟକଣା ଥିଲା ତାହାକୁ ଗାନ୍ଧୀ - ଇରଭିନ ଚୁକ୍ତି ଅନୁସାରେ ସରକାର ୧୯୩୧ ମାର୍ଚ୍ଚ ୫ ତାରିଖରେ ପ୍ରତ୍ୟାହାର କରିନେଲେ । ଫଳରେ ନେତାମାନେ ଜେଲରୁ ଖଲାସ ହେଲେ । କଂଗ୍ରେସ ମଧ୍ୟ ଆନ୍ଦୋଳନ ପ୍ରତ୍ୟାହାର କରିନେଲା । ମଣ ଆଇନ ଅମାନ୍ୟ ଆନ୍ଦୋଳନ ବିଭିନ୍ନ ପର୍ଯ୍ୟାୟରେ ୧୯୩୪ ମସିହା ଯାଏ ଗୁଲିଥିଲା । ୧୯୩୨ ମସିହାର ଶେଷବେଳକୁ ଆଇନ ଅମାନ୍ୟ ଆନ୍ଦୋଳନରେ ବାନର ସେନା ଭାବରେ ଅଂଶ ଗ୍ରହଣ କରି ମଥୁରାନାଥର ଅବିନାଶ ଚନ୍ଦ୍ର ବେହେରା ଏକମାସ ଜେଲ ଦଣ୍ଡ ଭୋଗିଲେ ।

ଇଂରେଜମାନେ ବିଭାଜନ କରିଆରେ ଶାସନ କରିବା ନୀତି (Divide & Rule Policy) କୁ ଠିକ୍ ଭାବରେ କାର୍ଯ୍ୟକାରୀ କରୁଥିଲେ । ହିନ୍ଦୁ ଓ ମୁସଲମାନଙ୍କ ଭିତରେ ଅବିଶ୍ୱାସର ବାତାବରଣ ସୃଷ୍ଟି କରି ଯାଉଥାଏ ତଥାପି ମୌଲନା ଆବୁଲ କାଲାମ ଆଜାଦ ଓ ଖାଁ । ଅବଦୁଲ ଗଫୁର ଖାଁଙ୍କ ଭଳି ଅନେକ ଜାତୀୟବାଦୀ ମୁସଲମାନ ନେତା ଏ ସବୁଠୁ ଦୂରରେ ରହି ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନରେ ନିଜକୁ ସାମିଲ କରିଥାନ୍ତି ।

ହିନ୍ଦୁ ସମାଜ ଭିତରେ ସ୍ପୃଶ୍ୟ-ଅସ୍ପୃଶ୍ୟ ଭେଦଭାବ ରହିଥିବାରୁ ଇଂରେଜମାନେ ତାର ସୁଯୋଗ ନେବାକୁ ଚେଷ୍ଟା କଲେ । ଡଃ ବି. ଆର. ଆମ୍ବେଦକରଙ୍କ ନେତୃତ୍ୱରେ ଦଳିତମାନେ ସ୍ୱତନ୍ତ୍ର ପ୍ରତିନିଧିତ୍ୱ ଦାବୀ କଲେ । ନୂତନ ଶାସନ ଖସଡ଼ାରେ ଏହାକୁ ସ୍ୱୀକୃତି ମିଳିବାରୁ ଗାନ୍ଧିଜୀ ଜେଲରେ ୧୯୩୨ ସେପ୍ଟେମ୍ବର ୨୦ ତାରିଖରେ ଏହା ବିରୁଦ୍ଧରେ ଆମରଣ ଅନଶନ ଆରମ୍ଭ କଲେ । ସମଗ୍ର ଦେଶରେ

ଚଞ୍ଚଳ ପଡ଼ିଗଲା । ଡ଼ଃ ଆମ୍ବେଦକର ଓ ଅନ୍ୟମାନେ ମିଶି ଗାନ୍ଧିଜୀଙ୍କ ସହିତ ଏ ବିଷୟରେ ଆଲୋଚନା କଲେ । ଫଳ ସ୍ୱରୂପ ଏଭଳି ବିଭେଦକାରୀ ବ୍ୟବସ୍ଥା ଉଠିଗଲା । ପ୍ରସିଦ୍ଧ "ପୁନା-ଚୁକ୍ତି" ନାମରେ ଏହା ବିଖ୍ୟାତ । ଦେଶବାସୀ ଆଶ୍ୱସ୍ତ ହେଲେ ।

ମାତ୍ର ଏହାପରେ ଗାନ୍ଧିଜୀ ସମଗ୍ର ଦେଶରେ ଅସ୍ପୃଶ୍ୟତା ନିବାରଣ ପାଇଁ କାମ ଆରମ୍ଭ କଲେ । ଅମୃତ ଲାଲ ଠକ୍କରଙ୍କ ନେତୃତ୍ୱରେ "ନିଖିଳ ଭାରତ ହରିଜନ ସେବକ ସଂଘ" ଗଠିତ ହେଲା । ସାମାଜିକ କ୍ଷେତ୍ରରେ ହିନ୍ଦୁମାନଙ୍କ ସହିତ ଦଳିତ ବର୍ଗର ଲୋକମାନଙ୍କୁ ସମାନ କରିବା ଲକ୍ଷ୍ୟରେ ସେମାନଙ୍କର ଆର୍ଥିକ, ସାଂସ୍କୃତିକ ଓ ଶିକ୍ଷାଗତ ଉନ୍ନତି ପାଇଁ ଚେଷ୍ଟା ଚାଲିଲା । ଗାନ୍ଧିଜୀ ସେମାନଙ୍କୁ "ହରିଜନ" ନାମରେ ନାମିତ କଲେ ।

ଓଡ଼ିଶାରେ ନିଖିଳ ଭାରତ ହରିଜନ ସେବକ ସଂଘର ଶାଖା ଖୋଲିଲା । ହିନ୍ଦୁ ମନ୍ଦିରରେ ପୂଜାର୍ଚ୍ଚନା କରିବା, କୂଅ ପୋଖରୀରେ ଅନ୍ୟମାନଙ୍କ ସହିତ ମିଶି ପାଣି ବ୍ୟବହାର କରିବାର ଅଧିକାର ଦେବା ପାଇଁ ସାମାଜିକ ସଚେତନତା ସୃଷ୍ଟି କରାଗଲା । ପ୍ରନଷ୍ଟ ଉଭୟ ସମ୍ପ୍ରଦାୟ ଭିତରେ ପ୍ରଚଳିତ ଥିବା କୁସଂସ୍କାର ଗୁଡ଼ିକ ଦୂର କରିବା ପାଇଁ କଂଗ୍ରେସ କର୍ମୀମାନେ ଲାଗି ପଡ଼ିଲେ । ସେମାନେ ଖଣ୍ଡିଏ ଖଣ୍ଡିଏ ଖାତା ଧରି ଘରକୁ ଘର ବୁଲୁଥାନ୍ତି । ସେଥିରେ ଲେଖା ଥାଏ ଅସ୍ପୃଶ୍ୟତା ହିନ୍ଦୁଧର୍ମ ଅନୁମୋଦିତ ନୁହେଁ । ବରଂ, ଅଛୁଆଁ ମାନିବାଟା 'ପାପ' । ଯେଉଁମାନେ ଏହା ସହିତ ଏକମତ ହେଉଥିଲେ, ସେମାନେ ଏଥିରେ ଦସ୍ତଖତ କରୁଥିଲେ । ଗାଁ ଗାଁରେ ଗାନ୍ଧିଜୀଙ୍କର "ହରିଜନ" ପତ୍ରିକା ବିକ୍ରି କରାଗଲା । ଲୋକନାଥ ମିଶ୍ର

ଓଡ଼ିଆ 'ହରିଜନ' ପତ୍ରିକାର ସମ୍ପାଦକ ଥିଲେ । ଓଡ଼ିଶାରେ ଏ ପତ୍ରିକା ଖୁବ୍ ଲୋକପ୍ରିୟ ହୋଇଥିଲା ।

୧୯୩୨-୩୩ ମସିହାରେ ହରେକୃଷ୍ଣ ମହତାବ ତାଙ୍କ ନିଜ ଗାଁ ଅଗରପଡ଼ା ଠାରେ 'ଗାନ୍ଧୀ କର୍ମ ମନ୍ଦିର' ପ୍ରତିଷ୍ଠା କରିଥିଲେ । ସେଠାରେ ସୂତା କାଟି ଲୁଗା ବୁଣିବା, ତେଲ ପେଡ଼ିବା ତଥା ବିଭିନ୍ନ ପ୍ରକାର କୁଟୀର ଶିଳ୍ପ ସମ୍ବନ୍ଧୀୟ ଶିକ୍ଷା ଦିଆ ଯାଉଥିଲା । ତାହାର ଦାଞ୍ଚାରେ ବିଭିନ୍ନ ସ୍ଥାନରେ କର୍ମ ମନ୍ଦିରମାନ ଗଢ଼ି ଉଠିଲା । ସେଥି ମଧ୍ୟରୁ ଜଳେଶ୍ୱର ନିକଟବର୍ତ୍ତୀ ଖାଡ଼ ପିମ୍ପଳ ଗାଁର କର୍ମ ମନ୍ଦିରଟି ଅନ୍ୟତମ । ଏହାର ତତ୍ତ୍ୱାବଧାରକ ଥିଲେ ଗଙ୍ଗାନାରାୟଣ ଦାସ । ଶ୍ରୀ ମହତାବ ମଝିରେ ମଝିରେ ଆସି ତାହାର ଯତ୍ନ ନେଉଥିଲେ । ଏଠାରେ ଥିବା କର୍ମୀମାନେ ସଦା ତତ୍ପର । ଗାଁ ସଫେଇ, ହରିଜନଙ୍କ ଶିକ୍ଷା ଓ ସବର୍ଣ୍ଣଙ୍କ ସହିତ ସେମାନଙ୍କୁ ସମାନ ସୁବିଧା ସୁଯୋଗ ଦେବାର ପରିବେଶ ସୃଷ୍ଟି କରିବା ଆଦି ରଚନାତ୍ମକ ଓ ଗଠନ ମୂଳକ କାମ ସେଠାରେ ଚାଲିଥାଏ । ଜନ ସାଧାରଣ ମଧ୍ୟ ଏସବୁ କାମରେ ଆଗ୍ରହ ପ୍ରକାଶ କରୁଥାନ୍ତି । ସ୍ୱାଧୀନତା ଆନ୍ଦୋଳନ ସମୟରେ ଏ କର୍ମ ମନ୍ଦିର ଗୁଡ଼ିକର ଭୂମିକା ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ଥିଲା ।

ଜଳେଶ୍ୱରର ଷ୍ଟେସନ ବଜାରରେ ଡା: ହରେନ୍ଦ୍ର ନାଥ ଦାସ ଡାକ୍ତରଖାନା ଖୋଲି ରୋଗୀମାନଙ୍କୁ ଚିକିତ୍ସା କରୁଥାନ୍ତି । ଅନ୍ୟ ଡାକ୍ତର କେହି ନ ଥିବାରୁ ତାଙ୍କ ପାଖକୁ ବହୁତ ରୋଗୀ ଆସନ୍ତି । ସେ କଂଗ୍ରେସର ଜଣେ ଦୃଢ଼ ସମର୍ଥକ ଥିଲେ । ଏଠାରେ ରୋଗୀ ଚିକିତ୍ସା ସଙ୍ଗେ ସଙ୍ଗେ ସେ ଲୋକମାନଙ୍କ ଭିତରେ କଂଗ୍ରେସର ବାର୍ତ୍ତା ପ୍ରଚାର କରୁଥାନ୍ତି ।

ସେତିକବେଳର ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ଘଟଣା ହେଲା ମହାତ୍ମା ଗାନ୍ଧୀଙ୍କର ଓଡ଼ିଶାରେ ପଦଯାତ୍ରା । କର୍ମୀ ଓ ସାଧାରଣ ଲୋକମାନେ ତତ୍ପର ହୋଇ ଉଠିଥାନ୍ତି । ଅସ୍ପୃଶ୍ୟତା ନିବାରଣ ନିମନ୍ତେ ବିଭିନ୍ନ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ 'ହରିଜନ କଲ୍ୟାଣ ପାଣ୍ଠି' ଗଠନ କରି ଯାଇଥାଏ । ଗାନ୍ଧିଜୀ ପଦଯାତ୍ରା କରି ହରିଜନମାନଙ୍କ ଦୁରବସ୍ଥା ସ୍ୱ ଚକ୍ଷୁରେ ଦେଖୁଥାନ୍ତି ଓ ପାଣ୍ଠି ପାଇଁ ଅର୍ଥ ସଂଗ୍ରହ କରୁଥାନ୍ତି । ୧୯୩୪ ମସିହା ଜୁନ ମାସରେ ଗାନ୍ଧିଜୀଙ୍କୁ ନେଇ ଯାଉଥିବା ରେଳଗାଡ଼ି ଜଳେଶ୍ୱର ଷ୍ଟେସନରେ ପହଞ୍ଚିଲା । ସେଦିନ ଷ୍ଟେସନରେ ବିଭିନ୍ନ ଅଞ୍ଚଳରୁ ଆସିଥିବା ଅଗଣିତ ଶ୍ରଦ୍ଧାଳୁ ଜନ ସାଧାରଣଙ୍କର ଭିଡ଼ । "ଭାରତ ମାତାକି ଜୟ" "ମହାତ୍ମା ଗାନ୍ଧିକୀ ଜୟ" ଧ୍ୱନିରେ ସେ ଅଞ୍ଚଳ ପ୍ରକମ୍ପିତ ହୋଇ ଉଠିଲା । ଜଳେଶ୍ୱର ରେଳ ଷ୍ଟେସନରେ ସେଦିନ ଗାନ୍ଧିଜୀ 'ହରିଜନ କଲ୍ୟାଣ ପାଣ୍ଠି' ପାଇଁ ସଂଗ୍ରହ କଲେ ଟ: ୧୭୨।୮୫ (ଏକଶହ ବାଅସ୍ତରି ଟଙ୍କା ଗୋଟିଅଣା ସାଢ଼େ ଚାରି ପାହି) ମାତ୍ର । ସେତେବେଳେ ଅଣା, ପାହୁଲା ଓ ଅଧଲାର ପ୍ରଚଳନ ଥିଲା ।

ପରେ ମାଳତୀ ଚୌଧୁରୀ ଓ ଅନ୍ୟ କେତେଜଣ ନାରୀ ନେତ୍ରୀ ପଟିଆବାଦ ଅଞ୍ଚଳକୁ ଆସିଥାନ୍ତି— ସ୍ତ୍ରୀଲୋକମାନଙ୍କ ଭିତରେ ଥିବା କୁ ସଂସ୍କାର ଦୂରକରି ଜାଗରଣ ସୃଷ୍ଟି କରିବା ଉଦ୍ଦେଶ୍ୟରେ । ସେମାନେ କଂଗ୍ରେସ କର୍ମୀମାନଙ୍କୁ ସାଥୀରେ ନେଇ ଗାଁକୁ ଗାଁ ବୁଲି ସ୍ତ୍ରୀ ଲୋକମାନଙ୍କୁ ଭେଟି ବିଭିନ୍ନ କଥା ବୁଝାଇଲେ ।

ଆମର ଗାଁ ଓ ତାରିବାଡ଼ି ଦୁଇ ଗାଁ ମଝିରେ ଥିବା ଧାନ ବିଲର ନଡ଼ା ସଫାକରି ଅଷ୍ଟମ ପ୍ରହର ମହୋତ୍ସବର ଆୟୋଜନ କରା-ଯାଇଥାଏ । ପ୍ରତିଦିନ ଶହ ଶହ ଲୋକ ପ୍ରସାଦ ସେବନ କରନ୍ତି ।

ସାଧାରଣ ସଭା ମଧ୍ୟ ହୁଏ । କେତେକ ଧନୀ ଘରର ନିରକ୍ଷର ଯୁବକ ସଫା ଲୁଗା କୁଞ୍ଚ କରି ପିନ୍ଧି କେରି ବାଗେଇ ବାବୁ ବେଶରେ ସେଠାକୁ ଆସିଥାନ୍ତି । ସେମାନେ ମୂର୍ଖ ଓ କେବଳ ବୁଲିବା ଛଡ଼ା ଆଉ କିଛି କରନ୍ତି ନାହିଁ ବୋଲି ଜାଣି ମାଳତୀ ଦେବୀ ବହୁତ ଦୁଃଖିତ ହେଲେ ଓ ସେମାନଙ୍କୁ ପାଖକୁ ଡାକି ପାଠ ପଢ଼ିବା ଓ ଦେଶ ପାଇଁ କିଛି କରିବା ନିମନ୍ତେ ଉପଦେଶ ଦେଲେ । ମଥା ତଳକୁ ପୋତି ସେମାନେ ତାଙ୍କ ଉପଦେଶ ମାନ ନେଲେ ଓ ପରେ ସାଧାରଣ ଲେଖାପଢ଼ା ଶିଖିଥିଲେ ।

କଳମା ତନ୍ତୀବାଡ଼ି ଜମିଦାର (ବିଭୂତି ଭୂଷଣ ବସୁଙ୍କ ବାଡି)ରେ ବେଳେବେଳେ ସଭା ହୁଏ । ଗୌରଚନ୍ଦ୍ର ଦାସ, ନୀଳମଣି ରାଉତରାୟ, ଲକ୍ଷ୍ମୀନାରାୟଣ ସାହୁ, ପ୍ୟାରୀ ମୋହନ ଦାସ ଓ ନୀଳାମ୍ବର ଦାସ ପ୍ରଭୃତି ଯୋଗଦେଇ ସେମାନଙ୍କର ଓଜସ୍ୱିନୀ ଭାଷଣରେ ଶ୍ରୋତାଙ୍କୁ ମତାଇ ଦିଅନ୍ତି । ବାଲ୍ୟବିବାହ, ନିରକ୍ଷରତା ଓ ନିଶା ସେବନ ବିରୁଦ୍ଧରେ ନାନା କଥା କହି ବୁଝାନ୍ତି । ପ୍ରଥମେ ପ୍ରଥମେ ଚୌକିଦାର ଦଫାଦାର ବା ପୋଲିସ ଆସିଲେ ଭୟରେ ଅନେକ ଲୋକ ସଭା ସ୍ଥାନ ଛାଡ଼ି ପଳାଇ ଯାଉଥିଲେ ବି ପରେ ପରେ ସେମାନଙ୍କ ଭିତରେ ସାହସ ସଞ୍ଚାର ହେଲା ଓ ଭୟ ଦୂର ହେଲା ।

ସେମିତି ଥରେ ବାଙ୍କୁଡ଼ିପଦା ଗାଁ ଜଙ୍ଗଲ ପାଖ ପଦାରେ ସଭା ହେଉଥାଏ । ସମୟ ରାତି ୮ଟା । ହରେକୃଷ୍ଣ ମହତାବ ଓ ସ୍ଥାନୀୟ କର୍ମୀ ସତ୍ୟେନ୍ଦ୍ର ନାଥ ତରର, ଜଗନ୍ନାଥ ଦାସ ଅଧିକାରୀ, ପଦ୍ମନାଭ କାନ୍ତ ଏବଂ କୃଷ୍ଣପ୍ରସାଦ ଜେନା ପ୍ରଭୃତି ଯୋଗଦେଇ ଦେଶର କଥା, ଆନ୍ଦୋଳନର ଗତି ଓ ପ୍ରକୃତି ସମ୍ବନ୍ଧରେ ବୁଝାଉଥିଲେ । ସଭାରେ ଉପସ୍ଥିତ ପ୍ରାୟ ଦୁଇଶହ ଆଦିବାସୀ ନୀରବରେ ନେତାମାନଙ୍କ କଥା ଶୁଣୁଥାନ୍ତି । ହଠାତ୍ ଚୌକିଦାର ପାର୍ବଣ ସିଂ ଛଦ୍ମ ବେଶରେ ଆସି

ଖବର ଦେଲାଯେ ପୋଲିସ ଆସୁଛନ୍ତି । ଏତିକି କହିଦେଇ ଜଙ୍ଗଲ ଭିତରେ କୁଆଡ଼େ ଲୁଚିଗଲା । ପୋଲିସ ସେଠାରେ ପହଞ୍ଚିବା ପୂର୍ବରୁ ଉପସ୍ଥିତ ଲୋକ ଓ ନେତାମାନେ ଯିଏ ଯୁଆଡ଼େ ପାରେ ପଳାଇଗଲେ । ପୋଲିସ ପହଞ୍ଚି କାହାରିକୁ ନ ଦେଖି କେତୋଟି ଆଦିବାସୀ ଘରେ ନେତାମାନଙ୍କୁ ଖୋଜି ନ ପାଇ ଫେରିଗଲେ । ଗୃକଣ୍ଟ କରିଥିଲେ ମଧ୍ୟ ନିରକ୍ଷର ଆଦିବାସୀ ପାଟଣ ଗ୍ରାମ ସ୍ୱାଧୀନତା ଆନ୍ଦୋଳନ ପ୍ରତି ସହାନୁଭୂତିଶୀଳ ଥିଲେ ।

ଶାଳବଣି ଗାଁ । ନିକଟବର୍ତ୍ତୀ କନ୍ଦଡ଼ା ଗ୍ରାମର ବାସିନ୍ଦାମାନେ ମୁଖ୍ୟତଃ ଭୂମିଜ ଓ ତନ୍ତୀ ଜାତିର । ସେମାନେ ନିରକ୍ଷର ଓ ଗରିବ, ମାତ୍ର ସଚେତନ । ସ୍ୱାଧୀନତା ଆନ୍ଦୋଳନର ଏଇ ପର୍ଯ୍ୟାୟରେ କନ୍ଦଡ଼ା ଠାରେ ଏକ ଶିକ୍ଷାକେନ୍ଦ୍ର ଖୋଲି ନିରକ୍ଷରଙ୍କୁ ପାଠ ପଢ଼ାଇବାର ଦାୟିତ୍ୱ ନେଲେ ପଦ୍ମନାଭ କାହୁ । ସେଥିପାଇଁ ଆବଶ୍ୟକ ଘରର ଖୁଣ୍ଟି ମାଟି କାନ୍ଥ ତିଆରି କରି ଛପର କରିବା ପାଇଁ ଦରକାର ପଡ଼ୁଥିବା କାଠ ଲୋକେ ନିକଟବର୍ତ୍ତୀ ମେନାକର ଜଙ୍ଗଲରୁ ସଂଗ୍ରହ କଲେ । ଏଥିପାଇଁ ନିୟମ ଅନୁସାରେ 'ଗ୍ରାଣ୍ଡ' (ଅନୁମତି ପତ୍ର) ନିଆଯାଇଥିଲେ ମଧ୍ୟ ପୂର୍ବ ଆକ୍ରୋଶ ଯୋଗୁଁ ଜମିଦାର ତାଙ୍କ ବିରୁଦ୍ଧରେ ମୋକଦ୍ଦମା କଲେ । ଜଳେଶ୍ୱର ପୋଲିସ ସମସ୍ତ କାଗଜପତ୍ର ଦେଖି ମଧ୍ୟ ତାଙ୍କୁ ଏରେଷ୍ଟ କରି ଅଣ୍ଟା ଓ ହାତରେ ଦଉଡ଼ି ବାନ୍ଧି, ଚଲାଇ ଚଲାଇ ଜଳେଶ୍ୱର ଷ୍ଟେସନକୁ ନେଲେ ଓ ବାଲେଶ୍ୱର କୋର୍ଟକୁ ଚାଲାଣ କଲେ । ଏ ଖବର ପ୍ରଚାରିତ ହୋଇଗଲା । ତହିଁ ପରଦିନ କନ୍ଦଡ଼ା ଓ ଆଖ ପାଖ ଗ୍ରାମର ଅନେକ ଲୋକ ବାଲେଶ୍ୱରରେ ପହଞ୍ଚି ଏକ ଶୋଭା ଯାତ୍ରାରେ ଯାଇ କଲେକ୍ଟରଙ୍କୁ ଦେଖାକରି ଅନ୍ୟାୟ ଭାବରେ ଗିରଫ କରାଯାଇଥିବା ଶ୍ରୀ କାହୁଙ୍କର ମୁକ୍ତି ଦାବି କଲେ । କୋର୍ଟରେ ତାଙ୍କୁ ଜାମିନ ମିଳିଲା ଓ ବିଚାର ପରେ ସେ ନିର୍ଦ୍ଦୋଷରେ ଖଲାସ ହେଲେ ।



# କର ବା ମର

## ପ୍ରସ୍ତୁତ ପର୍ବ

ଦ୍ୱିତୀୟ ବିଶ୍ୱଯୁଦ୍ଧ ଆସନ୍ନ । ଆନ୍ତର୍ଜାତିକ ସ୍ତରରେ ଇଂଲଣ୍ଡ ବର୍ତ୍ତମାନ ଅଡୁଆରେ ପଡ଼ିଛି । ଏତିକ ବେଳେ ଭାରତର ସ୍ୱାଧୀନତା ପାଇଁ ଦେଶ ଭିତରୁ ଇଂରେଜ ସରକାରଙ୍କ ଉପରେ ଚାପ ପକାଯିବା ଏକାନ୍ତ ଆବଶ୍ୟକ । କଂଗ୍ରେସର ସାଂଗଠନିକ କାର୍ଯ୍ୟକ୍ରମକୁ ଆହୁରି ଜୋରଦାର କରାଯିବା ଦରକାର । ପ୍ରତି ଥାନାରୁ ସକ୍ରିୟ କଂଗ୍ରେସ କର୍ମୀମାନଙ୍କୁ ନେଇ ଥାନା କମିଟିମାନ ଗଢା ଯିବାର ସ୍ଥିର ହୋଇଥାଏ । ଜଳେଶ୍ୱର ଥାନାରୁ ସକ୍ରିୟ ସଭ୍ୟମାନଙ୍କୁ ବାଲେଶ୍ୱର ମିଟିଂକୁ ଡାକି ନେଇଯିବାର ଦାୟିତ୍ୱ ନେଇଥିଲେ ଜିଲ୍ଲା କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଗୌର ଚନ୍ଦ୍ର ଦାସ ।

ତା ୩ । ୩ । ୧୯୩୯ ଈଟରେ ଜିଲ୍ଲା କଂଗ୍ରେସ କାର୍ଯ୍ୟକାରୀ କମିଟିର ଅଧିବେଶନ ବାଲେଶ୍ୱରର "ବାଣୀଭବନ" ଠାରେ ବସିଲା । ଡଃ ହରେକୃଷ୍ଣ ମହତାବ ସଭାପତି । ଫତିଆବାଦ ପ୍ରଗଣାରୁ ଯେଉଁମାନଙ୍କୁ ଡକା ଯାଇଥିଲା ସେମାନେ ହେଲେ ଚମାରଗାଁର କୃଷ୍ଣ ପ୍ରସାଦ ଜେନା, ଚିନ୍ତାମଣି ଜେନା, ଶାଳବଣିର ଜଗନ୍ନାଥ ଦାସ ଅଧିକାରୀ, କମାରଗୋଳର ପଦ୍ମନାଭ କାନ୍ତ । ଏହି ଗ୍ରାମ ଗୁଡିକ ବର୍ତ୍ତମାନ ରାଇବଣିଆ ଥାନାର ଅନ୍ତର୍ଭୁକ୍ତ । ଏତଦ୍ ବ୍ୟତୀତ ଚୌଧୁରୀ ରାମଶଙ୍କର ଦାସ ମହାପାତ୍ର ସା:-ଅଲ୍ଲପୁର, ଭୂପତି ଚରଣ ନନ୍ଦୀ ସା:-ଭଆଦା, ଅଟଳ ବିହାରୀ ମହାନ୍ତି ସା:-ଲକ୍ଷ୍ମଣନାଥ, ପୂର୍ଣ୍ଣଚନ୍ଦ୍ର ସେନାପତି ସା: ଶାନ୍ତୁଆ, ଗଙ୍ଗା ନାରାୟଣ ଦାସ, ମାନଗୋବିନ୍ଦ ଅଣ୍ଡିଆ ଓ ଶ୍ରୀଧର ଚରଣ ଦାସ ସା.-ଝାଡ଼ପିମ୍ପଳ

ଓ ହରେନ୍ଦ୍ର ନାଥ ଘୋଷ ସା-ଗୋପ ପ୍ରଭୃତିଙ୍କୁ ମଧ୍ୟ ଜଳେଶ୍ୱର ଥାନାରୁ ଡକା ଯାଇଥିଲା ।

ମାତ୍ର ସେତେବେଳେ ପଦ୍ମନାଭ ଦାସ ରାଇବଣିଆ ନି: ପ୍ରା: ବିଦ୍ୟାଳୟର ୨ୟ ଶିକ୍ଷକ ଓ ଜଗନ୍ନାଥ ଦାସ ଅଧିକାରୀ ଗୁଡ଼ଫଲ ନି:ପ୍ରା: ବିଦ୍ୟାଳୟର ହେଡ଼ ପଣ୍ଡିତ ଥିବାରୁ କଂଗ୍ରେସ କାର୍ଯ୍ୟକାରୀ କମିଟିର ମିଟିଂରେ ଯୋଗ ଦେଇ ପାରିବେନି ବୋଲି ଡଃ ମହତାବ ମତ ଦେଲେ । ମାତ୍ର ସେମାନଙ୍କର ଆଗ୍ରହ ଓ ଦୀର୍ଘ ଦିନଧରି ସେମାନେ କଂଗ୍ରେସ ପାଇଁ କାମ କରିଥିବା କଥା ଗୌରଚନ୍ଦ୍ର ଦାସ ପ୍ରକାଶ କଲେ । ସେମାନେ ସଙ୍ଗେ ସଙ୍ଗେ ଚାକିରୀରୁ ଇସ୍ତଫା ଦିଅନ୍ତୁ ବୋଲି ଡଃ ମହତାବ ପରାମର୍ଶ ଦେବାରୁ ସେ ଦୁଇ ଜଣ ତାହାକୁ ଗ୍ରହଣ କରିନେଲେ ଓ ସେହିଦିନ ଅର୍ଥାତ ତା ୩-୩-୧୯୩୯ ରିଖ ରେ ସେମାନେ ଡଃ ମହତାବଙ୍କୁ ସେମାନଙ୍କର ଇସ୍ତଫା ପତ୍ର ଲେଖି- ଦେଲେ । ତତ୍‌କ୍ଷଣାତ୍ ସେଗୁଡ଼ିକୁ ଗ୍ରହଣ କରିନେବାର ବ୍ୟବସ୍ଥା କରାଗଲା ଓ ସେମାନେ ସେହି ଦିନ କଂଗ୍ରେସ ମିଟିଂରେ ଯୋଗଦେଲେ ।

ଜିଲ୍ଲାର ପ୍ରତି ଥାନାରେ କର୍ମୀ ତାଲିମ ଓ ସୂତାକଟା କେନ୍ଦ୍ର ଖୋଲିବା ପାଇଁ ସେହିଦିନ ମିଟିଂରେ ସ୍ଥିରହେଲା । ତଦନୁସାରେ ଏ ଦୁଇଜଣଙ୍କୁ ଜଳେଶ୍ୱର ଥାନାର ଦାୟିତ୍ୱ ଅର୍ପଣ କରାଗଲା । ଏଭଳି କେନ୍ଦ୍ର ସ୍ଥାପନର ଦୁଇଟି ଲକ୍ଷ୍ୟ ଥିଲା । ପ୍ରଥମରେ ଗଠନ ମୂଳକ କାମହେବ ଓ ଦ୍ୱିତୀୟରେ କର୍ମୀ ମାନଙ୍କୁ ମଧ୍ୟ ତାଲିମ ଦିଆଯିବ ।

ସେହି ସିଦ୍ଧାନ୍ତ ଅନୁସାରେ ବମାରଗାଁ ଠାରେ ଏକ ସୂତାକଟା ଓ କର୍ମୀ ତାଲିମ କେନ୍ଦ୍ର ଆରମ୍ଭ କରାଗଲା । କୃଷ୍ଣ ପ୍ରସାଦ ଜେନା,

ସୁରେଶ ଚନ୍ଦ୍ର ଦେ ଓ ତ୍ରିଲୋଚନ ଦାସ ଆବଶ୍ୟକ ଜମି ଯୋଗାଇ ଦେଲେ । ଚମାରଗାଁର ପଶ୍ଚିମକୁ ଶାନ୍ତପୁର ସଡ଼କ । ତାର ପଶ୍ଚିମ ପଟକୁ ସଡ଼କକୁ ଲାଗି ଏକ ନଡ଼ା ଛପର ଘର ତିଆରି ହେଲା । ଆଡ଼ମ୍ବର ସହକାରେ ଏହାକୁ ଉଦ୍‌ଘାଟନ କରାଗଲା । କରୁଣାକର ପାଣିଗ୍ରାହୀ ଓ ଗୌରଚନ୍ଦ୍ର ଦାସଙ୍କୁ ଏକ ବିରାଟ ଶୋଭାଯାତ୍ରାରେ ଏ କେନ୍ଦ୍ରକୁ ନିଆଗଲା । ସେମାନେ ଉପସ୍ଥିତ ଲୋକଙ୍କୁ ଏ କର୍ମୀ ତାଲିମ ଓ ସୂତାକଟା କେନ୍ଦ୍ର ସ୍ଥାପନର ଉଦ୍ଦେଶ୍ୟ ତଥା ମହାତ୍ମା ଗାନ୍ଧୀଙ୍କ ପରିଚାଳିତ ଅହିଂସା ଏବଂ ଅସହଯୋଗ ମୂଳକ ସ୍ୱାଧୀନତା ସଂଗ୍ରାମର ଗତି, ପ୍ରକୃତି ଓ ଭବିଷ୍ୟତ କର୍ମପନ୍ଥା ସଂପର୍କରେ ବୁଝାଇ ଉଦ୍‌ବୋଧନ ଦେଲେ । ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟି ତରଫରୁ ସୋର ଥାନା ଘଡ଼ପଡ଼ା ଗ୍ରାମର କଣାରାମ କୁଅଁରଙ୍କୁ ସୂତାକଟା ଓ ଲୁଗାବୁଣା ଶିକ୍ଷା ଦେବାପାଇଁ ଚମାରଗାଁ କେନ୍ଦ୍ରକୁ ପଠାଗଲା । ଆବଶ୍ୟକ ଅର୍ଥ ଓ ସୂତାକଟାର ଖର୍ଚ୍ଚ ଗୁଫଲ ଗ୍ରାମର ଧର୍ମ୍ମ ତଥା ଆନ୍ଦୋଳନ ପ୍ରତି ସହାନୁଭୂତିଶୀଳ ବ୍ୟକ୍ତି ଦୁଃଖନାଥ ପାତ୍ର ଓ ଶାଳବଣି ଗ୍ରାମର ଗୋପୀନାଥ ଡଗର ବହନ କଲେ । ଚମାରଗାଁର ତ୍ରିଲୋଚନ ଦାସ ପ୍ରଥମେ ଏକ ବସ୍ତା ତୁଳା ଏ କେନ୍ଦ୍ରକୁ ଦାନ କଲେ । ବିପୁଳ ଉତ୍ସାହରେ କାମ ଆଗେଇ ଚାଲିଲା । ତାଲିମ ନେବା ପାଇଁ ଅନେକ ଯୁବକ ଓ ବୟସ୍କ ଲୋକ ଆଗେଇ ଆସିଲେ । ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ଚମାରଗାଁର ଚିନ୍ତାମଣି ଜେନା, କାମପାଳ ଜେନା, ତ୍ରିଲୋଚନ ଦାସ, ସୁରେଶ ଚନ୍ଦ୍ର ଦେ, ଲୋକନାଥ ଦେ ଓ କୃଷ୍ଣପ୍ରସାଦ ଜେନା, ଗୁଣ୍ଡୁରିଶୋଳର ରାଖାଲ ଚନ୍ଦ୍ର ସିଂ, କମାରଶୋଳର ପଦ୍ମନାଭ କାନ୍ତ, ଶାଳବଣିର ଜଗନ୍ନାଥ ଦାସ ଅଧିକାରୀ, ଗୁଫଲର ବିଦ୍ୟାଧର ଭୂୟାଁ, ଭଣ୍ଡାରି ପଲ୍ଲି ଗ୍ରାମର କଣାରାମ ଦାସ, ମଥୁରାନାଥର ଅବିନାଶ ଚନ୍ଦ୍ର ବେହେରା

ଘନୁପୁରର ଗୋବିନ୍ଦ ପ୍ରସାଦ ଗିରି, କଳମାର ପଦ୍ମନାଭ ବାରିକ ଓ ଗୋବିନ୍ଦ ମୁଣ୍ଡାଖି ପାଠୀ, ସରଡିହାର ସତ୍ୟେନ୍ଦ୍ର ନାଥ ଉଗର, ପୁରୁଣାପାଣିର ଚିନ୍ତାମଣି ଜେନା, କଙ୍କଡାପେଟର ଜଗନ୍ନାଥ ଦାସ, ତେଘରର ଶିରିଷ ଚନ୍ଦ୍ର ଦେ, ନମଡ଼ିହାର କୈଳାସ ଚନ୍ଦ୍ର ସିଂ, ଲୁହାପଡ଼ାର କୁଆଁଣିଆ ସାନ୍ତାଳ ଏବଂ ଲକ୍ଷ୍ମଣନାଥର ଫଣୀ ଭୂଷଣ ଦାସ। ଏତଦ୍ ବ୍ୟତୀତ ଘୋଳାଇ ଗ୍ରାମର ଗଙ୍ଗାଧର ଗିରି ଓ ତାଙ୍କ ସ୍ତ୍ରୀ ଏବଂ କ୍ଷେତ୍ରମୋହନ ଜେନା, ମହୁଲିଆର ମାଧବାନନ୍ଦ ଦାସ ଅଧିକାରୀ, ତାଳଦଣ୍ଡିର ଉଦୟନାଥ ଜେନା ଓ ଉଦୟନାଥ ଦତ୍ତ ପ୍ରଭୃତି ଏବଂ ଅବିଭକ୍ତ ଜଳେଶ୍ବର ତଥା ସୋର ଥାନା ଅଞ୍ଚଳରୁ ମଧ୍ୟ କର୍ମୀମାନେ ଆସି ଏଠାରେ ତାଲିମ ନେଉଥିଲେ। ଆଜିବି ଏ ଅଞ୍ଚଳରେ ଅନେକ ଲୋକଙ୍କ ଘରେ ଚରଖା ଓ ଲୁଗା ବୁଣାର ଆବଶ୍ୟକ ସରଂଜାମ ରହିଛି ଓ ବ୍ୟବହାର ହେଉ ନଥିବା ଯୋଗୁଁ କ୍ରମେ ନଷ୍ଟ ହୋଇ ଯାଉଛି।

କର୍ମୀ ମାନଙ୍କର ରହିବା ଓ ଖାଇବା ଖର୍ଚ୍ଚ ତୁଲାଇବା ପାଇଁ ଚମାରଗାଁ ତଥା ଆଖପାଖ ଗାଁର ପ୍ରତ୍ୟେକ ସହାନୁଭୂତିଶୀଳ ଲୋକଙ୍କ ଘରେ ମାଟି ହାଣ୍ଡିଟାଏ ରଖାଗଲା। ପ୍ରତିଦିନ ସ୍ତ୍ରୀ ଲୋକ-ମାନେ ନିଜ ପରିବାର ଲୋକଙ୍କ ପାଇଁ ରାନ୍ଧିବାକୁ ଗଲାବେଳେ ମୁଠାଏ ଦୁଇମୁଠା ଚାଉଳ ସେହି ହାଣ୍ଡିରେ ପ୍ରଥମେ ରଖି ଦେଉଥିଲେ। ସତେ ଯେପରି ସେମାନଙ୍କ ପରିବାରର ନିଜଲୋକ କେହି ଜଣେ ବାହାରେ ରହିଛି - ତାହାର ପାଇଁ ଏ ଚାଉଳ ପଠାଯିବ। କି ଆନ୍ତରିକତା। ସପ୍ତାହରେ ଥରେ କର୍ମୀମାନେ ଆସି 'ମୁଠି ଚାଉଳ' ସଂଗ୍ରହ କରି ନେଇଯାଆନ୍ତି। ସେତେବେଳେ ଥିଲା ଅସୀମ ତ୍ୟାଗ

ଓ କଷ୍ଟ ସହ୍ୟ କରିବାର ଦିନ । ଆଜି ତାହା କଳ୍ପନା ବି କରାଯାଇ ପାରିବନି ।

ତା ୩ । ୯ । ୧୯୩୯ ରିଖରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ବ୍ରିଟିଶ - ଉପନିବେଶ ଭାବରେ ଭାରତ ଏ ଯୁଦ୍ଧରେ ଯୋଗ ଦେଲା ବୋଲି ଇଂରେଜ ସରକାର ଘୋଷଣା କଲେ । ଏଥିପାଇଁ ଭାରତୀୟ ମାନଙ୍କର ମତ ନିଆଯାଇ ନଥିବା ଯୋଗୁଁ ଏ ସିଦ୍ଧାନ୍ତର ପ୍ରତିବାଦରେ ବିଭିନ୍ନ ପ୍ରଦେଶରେ ଥିବା କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲେ । ତା ୪ । ୧୧ । ୧୯୩୯ ରିଖରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ମଧ୍ୟ ଇସ୍ତଫା ଦେଲେ । କଂଗ୍ରେସର ନେତୃସ୍ଥାନୀୟ ବ୍ୟକ୍ତି ଓ କର୍ମୀମାନେ ଗାଁକୁଆଡ଼େ ବୁଲି ଯୁଦ୍ଧବିରୋଧୀ ଭାଷଣମାନ ଦେଲେ । ଫଳରେ ସାଧାରଣ ଲୋକମାନେ ମଧ୍ୟ ପ୍ରତି-ବାଦରେ ମୁଖର ହୋଇ ଉଠିଲେ । କଂଗ୍ରେସ କମିଟିମାନ "ସତ୍ୟାଗ୍ରହ କମିଟି" ରେ ପରିଣତ ହେଲା । ସେମାନେ କେବଳ ଗଠନମୂଳକ କାମରେ ଲାଗିଲେ । ବ୍ୟକ୍ତିଗତ ସତ୍ୟାଗ୍ରହ କରି ଯୁଦ୍ଧ ବିରୋଧୀ ଧ୍ୱନି ବା ଭାଷଣ ଦେଇ ଗିରଫ ହେଲେ ଓ ବିଗୃହରେ ଜେଲଦଣ୍ଡ ଭୋଗିଲେ । ଚମାରଗାଁ ଠାରେ ଦିନେ ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ଏକ ବିରାଟ ସାଧାରଣ ସଭା ହେଲା । "ସ୍ୱାଧୀନତା ଆମର ଦାବୀ" ଏହି ମର୍ମରେ ସେ ଓ ଅନ୍ୟମାନେ ସେମାନଙ୍କର ମତ ଉପସ୍ଥାପିତ କଲେ । ଭାନୁକୁଣ୍ଡର ଗ୍ରାମର ଗୋବିନ୍ଦ ଗିରି ଅନ୍ୟମାନଙ୍କ ସାଥିରେ ସେ ସଭାକୁ ଆସିଥିଲେ । ସେ ଏତେ ଭାବ ବିହ୍ୱଳ ହୋଇ ପଡ଼ିଲେ ଯେ ତାଙ୍କ ଜୀବନର ଗତିକୁ ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଦେଲେ । ଏଇଭଳି ଭାବରେ ନବକୃଷ୍ଣ ଚୌଧୁରୀ, ରବୀନ୍ଦ୍ର ମୋହନ ଦାସ, ନୀଳାମ୍ବର ଦାସ, କରୁଣାକର ପାଣିଗ୍ରାହୀ

ଓ ଗୌରଚନ୍ଦ୍ର ଦାସ ପ୍ରଭୃତି ଆସି ଚମ୍ପାରଗାଁ, ବରଡଙ୍ଗା, ଖୁଆଡ଼, ବାଘଡ଼ୁପଦା, ରାଇବଣିଆ, ଦକ୍ଷିଣପ୍ରହରାଜ ପୁର, କଙ୍କଡ଼ା ଫେରି, ସରଡଙ୍ଗା, ପୁରୁଣାପାଣି ଓ ଗୁଫଲ ପ୍ରଭୃତି କେନ୍ଦ୍ର ଗାଁ ମାନଙ୍କରେ ସଭା ସମିତି କରି ଲୋକମାନଙ୍କ ଭିତରେ ଯୁଦ୍ଧ ଓ ଇଂରେଜ ବିରୋଧୀ ମନୋଭାବ ସୃଷ୍ଟି କରୁଥିଲେ ।

ମିତ୍ରଶକ୍ତି ବିରୁଦ୍ଧରେ ଜାପାନ ଯୁଦ୍ଧରେ ଯୋଗଦେବା ଯୋଗୁଁ ଭାରତ ବିପଦର ଘେର ଭିତରକୁ ଟାଣି ହୋଇଗଲା । ଅଳ୍ପ ଦିନ ଭିତରେ ଭାରତ ଏକ ରଣକ୍ଷେତ୍ରରେ ପରିଣତ ହେଲା । ଇଂଲଣ୍ଡ ଓ ଆମେରିକା ପ୍ରଭୃତି ଦେଶର ଲକ୍ଷ ଲକ୍ଷ ସୈନ୍ୟ ଭାରତକୁ ଆସିଲେ । ଦେଶର ଅନେକ ସ୍ଥାନରେ ଉଡ଼ାଜାହାଜ ଘାଟୀ ଓ ସେନା ଛାଉଣୀମାନ ତିଆରି ହେଲା । କଟକର ନାଲିବର ଠାରେ ଏକ ବିରାଟ ସେନା ଛାଉଣୀରେ ଆମେରିକା ସୈନ୍ୟ ରହିଲେ । ଚୌଦାର ଠାରେ ତିଆରି ହେଉଥିବା ଉଡ଼ାଜାହାଜ ଘାଟୀ ପାଇଁ ସରକାର ଅଧିଗ୍ରହଣ କରିଥିବା ଜମିପାଇଁ କ୍ଷତିପୂରଣ ଟଙ୍କା ପ୍ରଜାମାନଙ୍କୁ ନଦେଇ ହଇରାଣ କରୁଥିବାରୁ ମହାତ୍ମା ଗାନ୍ଧୀ ମୀରା ବେନଙ୍କୁ ଓଡ଼ିଶା ପଠାଇଲେ । ସେ ଅବସ୍ଥା ଅନୁଧାନ କରି ଲୋକଙ୍କ ମନରେ ସାହସ ସଞ୍ଚାର କରାଇଲେ । ତାଙ୍କର ଚେଷ୍ଟା ଯୋଗୁଁ ଜମି ହରାଇଥିବା ଲୋକେ କ୍ଷତିପୂରଣ ପାଇଲେ ।

ରାଇବଣିଆ ଅଞ୍ଚଳର ଅତି ପାଖରେ ମୟୂରଭଞ୍ଜର ରାସଗୋବିନ୍ଦପୁର ଠାରେ ଏକ ବିମାନଘାଟୀ ତିଆରି ହେଲା । ହଜାର ହଜାର ସାମରିକ ଓ ବେସାମରିକ ଲୋକ ରାତି ଦିନ କାମରେ ଲାଗିଲେ । ଜିନିଷ ପତ୍ରର ଦରଦାମ୍ ହୁ ହୁ ବଢ଼ିଗଲା ଓ ନିତ୍ୟବ୍ୟବହାର୍ଯ୍ୟ ଜିନିଷପତ୍ର ସହଜରେ ମିଳିଲାନି । ଫଳରେ ସାଧାରଣ ଲୋକେ ଅଶେଷ ଦୁଃଖ କଷ୍ଟ ଭୋଗିଲେ ।

ଓଡ଼ିଶାର ସମୁଦ୍ର ଉପକୂଳ ଅଞ୍ଚଳରେ ଜାପାନୀ ଆକ୍ରମଣର ଆଶଙ୍କା ବଢ଼ିଥାଏ । ଥରେ ଥରେ ଜାପାନୀ ବୁଡ଼ାଜାହାଜ ମଧ୍ୟ ଓଡ଼ିଶାର ସାମୁଦ୍ରିକ ଜଳଭାଗରେ ପହଁରା ମାରୁଥିବାର ଦେଖାଗଲା । ଜାପାନୀ ଉଡ଼ାଜାହାଜ ଓ ବୁଡ଼ାଜାହାଜ ଗୁଡ଼ିକ ବ୍ରିଟିଶ ଜାହାଜ ଓ ସାମରିକ ଘାଟୀ ଉପରେ ଆକ୍ରମଣ କଲେ । ସରକାର ଓଡ଼ିଶାର ରାଜଧାନୀ ସମ୍ବଲପୁରକୁ ଉଠାଇ ନେଲେ । ସମୁଦ୍ର ଉପକୂଳ ଠାରୁ କୋଡ଼ିଏ ମାଇଲ ଭିତରେ ଧାନ, ଗୁଡ଼ ଜଳ ମହଜୁଦ କରି ନରଖିବା ପାଇଁ ଓ ତା ମଧ୍ୟରେ ଥିବା ସାଇକେଲ ଓ ମଟର ଗାଡ଼ିକୁ କୋଡ଼ିଏ ମାଇଲ ଦୂରକୁ ହଟାଇ ନେବାକୁ ସରକାରୀ ଆଦେଶ ଜାରି ହେଲା । ସରକାର ଆଶଙ୍କା କରୁଥାନ୍ତି ହୁଏତ ସେ ସବୁ ଜାପାନୀ ସୈନ୍ୟମାନଙ୍କ ହାତରେ ପଡ଼ିଯିବ । ଫଳରେ ଲୋକଙ୍କ ଭିତରେ ଆତଙ୍କ ଖେଳିଗଲା । ଦୂର ମଫସଲ ଗାଁରୁ ସହରକୁ ରୋଜଗାର ପାଇଁ ଯାଇଥିବା ଲୋକମାନେ ଗାଁକୁ ପଳାଇ ଆସିଲେ ।

ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସେତେବେଳେ କଲିକତାସ୍ଥ ନିଜର ବାସ ଗୃହରେ ଅନ୍ତରୀଣ ବନ୍ଦୀ ରହିଥାନ୍ତି । ହଠାତ୍ ୧୯୪୧ ମସିହା ଜାନୁୟାରୀ ୨୬ ତାରିଖରେ ଏକ କୁଲି ବେଶରେ ସେ ନିଜ ଘରୁ ବାହାରକୁ ଯାଇ ଶେଷରେ ଭାରତରୁ ମଧ୍ୟ ପଳାୟନ କଲେ ଏବଂ କିଛି ଦିନ ପରେ ଜର୍ମାନୀରେ ଆତ୍ମପ୍ରକାଶ କଲେ । ସେଠାରୁ ଜାପାନ ଯାଇ "ଆଜାଦ୍-ହିନ୍ଦ-ଫୌଜ" ଗଢ଼ିଲେ । ଜନ୍ମ ଭୂମିର ମୁକ୍ତି ଲକ୍ଷ୍ୟରେ ବହୁ ବାଧାବିଘ୍ନ ଅତିକ୍ରମ କରି ବର୍ମା ସୀମାନ୍ତ ଦେଇ ଭାରତରେ ପ୍ରବେଶ କରି ଭାରତରେ କିଛି ଅଂଶ ସ୍ୱାଧୀନ କଲେ । "ଜୟହିନ୍ଦ" ଓ "ଦିଲ୍ଲୀ ଚଲୋ" ଡାକରରେ ଭାରତର ଗଗନ ପବନ ପ୍ରକମ୍ପିତ ହେଲା । ଯୁବ ପ୍ରାଣରେ ନବୀନ ଉତ୍ସାହ ଓ ଉନ୍ମାଦନା ଖେଳିଗଲା ।

## ଚରମ ଆଘାତ

ଦ୍ରୁତ ଗତିରେ ପରିସ୍ଥିତି ବଦଳି ଯାଉଥାଏ । ଗାନ୍ଧିଜୀ ଠିକ୍ ସମୟରେ ଠିକ୍ ସିଦ୍ଧାନ୍ତ ନେଲେ । ଯୁଦ୍ଧ କ୍ଳାନ୍ତ ଇଂରେଜ ଶକ୍ତିକୁ ଦେଶ ଭିତରୁ ଶକ୍ତ ଆଘାତ ଦେବାର ଲକ୍ଷ୍ୟ ନେଇ ନିଖିଳ ଭାରତ କଂଗ୍ରେସ କମିଟିର ଏକ ଅଧିବେଶନ ବମ୍ବେ ଠାରେ ୧୯୪୨ ମସିହା ଅଗଷ୍ଟ ୮ ତାରିଖ ରାତିରେ ବସିଲା । ଗାନ୍ଧିଜୀ ଇଂରେଜମାନଙ୍କୁ ଡାକରା ଦେଲେ "ଭାରତ ଛାଡ଼" (Quit India) । ଦେଶବାସୀଙ୍କ ପ୍ରତି ତାଙ୍କର ଆହ୍ୱାନ ଥିଲା – 'Do or die' (କର ବା ମର) । ୯ ତାରିଖ ଭୋରରୁ ଗାନ୍ଧିଜୀଙ୍କୁ ଗିରଫ କରାଗଲା । ତାଙ୍କୁ ସିନା ଇଂରେଜ ସରକାର ଗିରଫ କରି ନେଲା, କିନ୍ତୁ ଏ ଜାତିର ପ୍ରତ୍ୟେକ ବ୍ୟକ୍ତିର ସୁପ୍ତ ଚେତନାରେ ମଧ୍ୟ ସ୍ୱାଧୀନତା ପାଇଁ ଯେଉଁ ବ୍ୟାକୁଳତା ସେ ସୃଷ୍ଟି କରି ପାରିଥିଲେ, ତାହାକୁ ସେମାନେ ଦବାଇ ଦେଇ ପାରିଲେ ନାହିଁ । ତେଣୁ ତା ପରେ ପରେ ଆକୁମାରୀ ହିମାଚଳ ସମସ୍ତ ଅଧିବାସୀଙ୍କ କାର୍ଯ୍ୟରେ ଓ କଥାରେ ବିଦ୍ରୋହର ସ୍ୱର ଝଂକୃତ ହୋଇ ଉଠିଲା । ଇଂରେଜ "ଭାରତ ଛାଡ଼", "କର ବା ମର" ଧ୍ୱନିରେ ଭାରତର ଗଗନ ପବନ ପ୍ରକମ୍ପିତ ହେଲା ।

ଏତଦ୍‌ବ୍ୟତୀତ କଂଗ୍ରେସ କାର୍ଯ୍ୟକାରୀ କମିଟିର ସମସ୍ତ ସଦସ୍ୟ ଯଥା ଜବାହାର ଲାଲ ନେହେରୁ, ମୌଲାନା ଆବୁଲ କାଲାମ ଆଜାଦ, ଆଚାର୍ଯ୍ୟ ଜେ: ବି: କୃପାଳିନୀ, ଆସଫ ଅଲ୍ଲୀ, ସର୍ଦ୍ଦାର ବଲ୍ଲଭଭାଇ-ପଟେଲ, ଖାଁ ଅବଦୁଲ ଗଫୁର ଖାଁ, ହରେକୃଷ୍ଣ ମହତାବ ଓ ଅନ୍ୟ ନେତାମାନେ ପ୍ରାୟ ଏକା ସମୟରେ ଗିରଫ ହୋଇଗଲେ । ସମଗ୍ର ଦେଶ ଏକା ସମୟରେ ନେତୃଶୂନ୍ୟ ହୋଇଗଲା କହିଲେ ଚଳେ । ଅନେକ ନେତୃସ୍ଥାନୀୟ ବ୍ୟକ୍ତି ଆତ୍ମଗୋପନ କରିଗଲେ ।

ବହୁ ଅନୁସନ୍ଧାନ କରି ଘର୍ଷଣ ପାଇଁ ଇଂରେଜ ସରକାର ସେମାନଙ୍କର ସନ୍ଧାନ ପାଇ ପାରିଲେ ନାହିଁ । ସେମାନେ ଗୁପ୍ତ ସ୍ଥାନ ମାନଙ୍କରେ ରହି ଲେଖାଥିବା ପ୍ରଚୁର ପତ୍ର, ବାର୍ତ୍ତା, ଆନ୍ଦୋଳନର ଖବର ଓ ନିର୍ଦ୍ଦେଶ ମାନ ବିଭିନ୍ନ ସ୍ଥାନକୁ ତଥା ସାଧାରଣ କର୍ମୀ ଓ ତଳ ସ୍ତରର ନେତାମାନଙ୍କୁ ଯୋଗାଇ ଦେଉଥିଲେ । ଓଡ଼ିଶାର ସୁରେନ୍ଦ୍ର ନାଥ ଦ୍ୱିବେଦୀ, ପ୍ୟାରୀ ମୋହନ ଦାସ ଓ ଗୌର ଚନ୍ଦ୍ର ଦାସ ପ୍ରଭୃତି ଆତ୍ମ ଗୋପନ କରିଗଲେ । ସେମାନେ "ଭାରତ ଛାଡ଼" ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ଲକ୍ଷ୍ୟରେ ଇଂରେଜ ସରକାରକୁ ଅଚଳ କରି ଦେବାର ସମସ୍ତ କାର୍ଯ୍ୟକ୍ରମ ରୂପାୟନ କରିବାର ନିର୍ଦ୍ଦେଶମାନ ଦେଉଥିଲେ । ସେତେବେଳେ ହିଂସା, ଅହିଂସା ପନ୍ଥାର ବାଛ ବିଚାର ଆଉ ରହିଲା ନାହିଁ ।

ବାଲେଶ୍ୱର ଜିଲାର ଅନ୍ୟତମ ବିପ୍ଳବୀ ନେତା ଶ୍ରୀ ଗୌର ଚନ୍ଦ୍ର ଦାସ ବା ଗୌର ବାବୁ ଲୁଚି ଛପି ସମଗ୍ର ଜିଲାରେ ବୁଲି ଲୋକମାନଙ୍କୁ ଉତ୍ସାହ ବାଣୀ ଶୁଣାଇ ଆନ୍ଦୋଳନକୁ ତୀବ୍ରତର କରାଇଲେ । ତାଙ୍କୁ ଧରାଇ ଦେଲେ ସରକାର ପାଞ୍ଚଶହ ଟଙ୍କା ପୁରସ୍କାର ଦେବାର ଘୋଷଣା କଲେ । ତାଙ୍କୁ ଆଶ୍ରୟ ଦେଇଥିବା ଲୋକଙ୍କୁ ଆଜୀବନ କାରାଦଣ୍ଡ ଦେଇ ତାର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରାଯିବାର ଘୋଷଣା ଓ ଧମକ ପ୍ରକାଶ ପାଇବା ସତ୍ତ୍ୱେ କୌଣସି ଲୋକ ତାଙ୍କର ସନ୍ଧାନ ଦେଲେ ନାହିଁ । ପରିଶେଷରେ ସେ ବାଲେଶ୍ୱର ସହର ନିକଟସ୍ଥ 'ଫିରସୀ ଡଙ୍ଗାରେ' ଆଶ୍ରୟ ନେଲେ ।

ନେତା ବା ନେତୃସ୍ଥାନୀୟ ବ୍ୟକ୍ତିମାନେ ଜେଲରେ ରହିଥିଲେ । ଅନେକ ଗୁପ୍ତରେ କାମ କରୁଥିଲେ ବି ଦେଶ ନେତା ଶୂନ୍ୟ ହୋଇ ରହିଲା ନାହିଁ । ପ୍ରତ୍ୟେକ ଲୋକ ଜଣେ ଜଣେ ନେତା ପାଲଟି ଗଲେ ।

ନିଜର ବିଗ୍ଧର ବୁଦ୍ଧି ଖଟାଇ ଯିଏ ଯାହା ପାରିଲା କରିଗଲା । ସବୁଠିଅବା ଦେଶବାସୀ ଏଭଳି ଏକ ଆହ୍ୱାନ ଓ ସମୟକୁ ଅପେକ୍ଷା କରି ରହିଥିଲେ ଏବଂ ନିଜକୁ ପ୍ରସ୍ତୁତ କରି ସାରିଥିଲେ ଦେଶ ମାତୃକାର ମୁକ୍ତି ଯଜ୍ଞରେ ଆହୁତି ଦେବାପାଇଁ । ପୂର୍ବରୁ ଗ୍ଲୁଲଥିବା ଅହିଂସା ଆନ୍ଦୋଳନର ସ୍ୱରୂପ ବଦଳି ଗଲା । ତେଣୁ ଅଧିକାଂଶ କ୍ଷେତ୍ରରେ ଆନ୍ଦୋଳନ ହିଂସାତ୍ମକ ହୋଇଗଲା । ରେଳ ଲାଇନ ଉପାଡି ଦେବା, ଟେଲିଫୋନ ତାର କାଟିଦେବା, ଗମନା ଗମନ ପଥରେ ଗୁରୁତ୍ୱପୂର୍ଣ୍ଣ ପୋଲ ସବୁ ନଷ୍ଟ କରିଦେବା କାମ ଆଗେଇ ଗ୍ଲୁଲିଲା । ସେତେବେଳେ ଲକ୍ଷ୍ମଣନାଥ ରୋଡ଼ ଷ୍ଟେସନ ପାଖରେ ରେଳ ଲାଇନ ଉପାଡ଼ି ଦେବାର ଚେଷ୍ଟା କରି ଯାଇଥିଲା ଏବଂ ସେଠାରେ ଓ ରାଜଘାଟ ରେଳ ପୋଲ ପାଖରେ ଟେଲିଫୋନ ତାର କାଟି ଦିଆ ଯାଇଥିଲା ।

ଫତଆବାଦ ପ୍ରଗଣାରେ ମଧ୍ୟ ଦେଶର ଅନ୍ୟ ଅଞ୍ଚଳ ସହିତ ସମତାଳରେ ଗଣ ଆନ୍ଦୋଳନ ଆଗେଇ ଗ୍ଲୁଲଥାଏ । 'ଚମାରଗାଁ କର୍ମୀ ତାଲିମ ଓ ସୂତାକଟା କେନ୍ଦ୍ର'କୁ ବନ୍ଦ କରି ଦିଆଗଲା ଏବଂ କର୍ମୀମାନେ ପୂର୍ଣ୍ଣ ଭାବରେ 'ଭାରତ ଛାଡ଼' ଆନ୍ଦୋଳନରେ ସାମିଲ ହୋଇଗଲେ ।

ସରଡିହା ଗ୍ରାମର ଦିବାକର ଗିରି ସତ୍ୟାଗ୍ରହୀମାନଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ । ସେ ତାଙ୍କର ଗୋଟିଏ ଘର ସତ୍ୟାଗ୍ରହୀମାନଙ୍କୁ ଛାଡ଼ିଦେଲେ । ସେଇଠି 'ସତ୍ୟାଗ୍ରହୀ ଶିବିର' ଖୋଲିଗଲା । ଦିନସାରି ସତ୍ୟାଗ୍ରହୀମାନେ ବିଭିନ୍ନ ଗାଁରେ ବା ନିକଟସ୍ଥ 'ମେନାବସା' ଜଙ୍ଗଲରେ ଲୁଚି ରହନ୍ତି । ରାତିହେଲେ ଏଇ ଘରେ ଏକଯୁଟ ହୋଇ ଆଗାମୀ ଦିନର କର୍ମପନ୍ଥା ନିର୍ଦ୍ଧାରଣ କରନ୍ତି ଓ ଜନ ସାଧାରଣଙ୍କୁ ଦିଗ୍‌ଦର୍ଶନ ଦିଅନ୍ତି । ସବୁ ବିପଦକୁ ମଥା ଉପରକୁ ନେଇ ଦିବାକର ଗିରି

ମେନାବସା ଜଙ୍ଗଲରେ ଲୁଚିଥିବା ସତ୍ୟାଗ୍ରହୀମାନଙ୍କୁ ଖାଦ୍ୟ ନେଇ ଦିଅନ୍ତି । ଥରେ କଲେକ୍ଟର ପୋଲିସ ଏସ: ଆଇ: ସେହି ବାଟ ଦେଇ ଯାଉଥିଲେ । ଶ୍ରୀ ଗିରି ଖାଦ୍ୟ ନେଇ ଯାଉଥିବାରୁ ତାଙ୍କୁ ସନ୍ଦେହ କଲେ । ମାତ୍ର ନିଜର ମଜୁରିମାନଙ୍କ ପାଖକୁ ଭାତ ଓ ତରକାରି ନେଇ ଯାଉଛନ୍ତି ବୋଲି କହି ସେ ରକ୍ଷା ପାଇଗଲେ ।

ଦିନେ ଆମ୍ଭ ଗୋପନକାରୀ ନେତା ଗୌର ଚନ୍ଦ୍ର ଦାସ ଦୁଇ ଖଣ୍ଡ ସତ୍ୟାଗ୍ରହୀ ପ୍ରତିଜ୍ଞା ପତ୍ର ଓ କେତେକ ବୁଲେଟିନ ପଠାଇଲେ । ପ୍ରତିଜ୍ଞା ପତ୍ରରେ ସ୍ୱାକ୍ଷରକାରୀଙ୍କୁ ଶପଥ ନେବାକୁ ପଡ଼ୁଥାଏ ଯେ ସେ ଜୀବନସାରା ସୂତାରେ ଲୁଗାବୁଣି ପିନ୍ଧିବେ, ଅସ୍ପୃଶ୍ୟତା ମାନିବେ ନାହିଁ ଓ ବିଦେଶୀ ଜିନିଷ ବର୍ଜନ କରିବେ ତଥା କଂଗ୍ରେସ କର୍ମକର୍ତ୍ତାମାନେ ଯେଉଁ ଆଦେଶ ଦେବେ ତାହାକୁ ପାଳନ କରିବେ । ଯଦି ଏ ସଂଗ୍ରାମରେ ତାଙ୍କର ଜୀବନ ମଧ୍ୟ ଚାଲିଯାଏ, ସେଥିପାଇଁ କାହାକୁ ସେ ଦାୟୀ କରିବେ ନାହିଁ । ସରଡିହା ଗ୍ରାମର ମହାଦେବଙ୍କ ମନ୍ଦିର ପ୍ରାଙ୍ଗଣରେ ରାତି ୧୦ଟା ବେଳେ ସତ୍ୟାଗ୍ରହୀମାନେ ଉପସ୍ଥିତ ହେଲେ । ସେମାନଙ୍କ ମଧ୍ୟରୁ ନିମ୍ନଲିଖିତ ୧୧ ଜଣ ପ୍ରତିଜ୍ଞା ପତ୍ରରେ ସ୍ୱାକ୍ଷର କଲେ । (୧) ସତ୍ୟେନ୍ଦ୍ର ନାଥ ଡଗର- ସରଡିହା (୨) ପଦ୍ମନାଭ କାନ୍ତ- କମାରଶୋଳ (୩) ଜଗନ୍ନାଥ ଦାସ ଅଧିକାରୀ- ଶାଳବଣି (୪) ଗଙ୍ଗାଧର ଗିରି- ଢୋଳାଇ (୫) ଫଣୀ ଭୂଷଣ ଦାସ-ଲକ୍ଷ୍ମଣନାଥ (୬) ଗୋବିନ୍ଦ ଚନ୍ଦ୍ର ପାଠୀ- କଳମା (୭) ପଦ୍ମନାଭ ବାରିକ- କଳମା (୮) କୁଆଁରିଆ ସାନ୍ତାଳ- ଲୁଢାପଡ଼ା (୯) ଚିନ୍ତାମଣି ଜେନା- ପୁରୁଣାପାଣି (୧୦) କଣାରାମ ଦାସ- ଭଣ୍ଡାର ପଲ୍ଲି (୧୧) କୈଳାସ ଚନ୍ଦ୍ର ସିଂ- ନମଡିହା । ଏ ପ୍ରତିଜ୍ଞା ପତ୍ର ଗୁଡ଼ିକ ଗୁପ୍ତରେ ଡାକ ନେବା ଆଣିବା କରୁଥିବା ଭଦ୍ରକ ଅଞ୍ଚଳର କର୍ମୀ କପିଳ ଦାସ ଜରିଆରେ ସେନାପତି

ଗୌର ଚନ୍ଦ୍ର ଦାହଙ୍କ ପାଖକୁ ନେଇଗଲେ । ପ୍ରତ୍ୟକ୍ଷ ଭାବରେ ସ୍ୱାକ୍ଷର କରି ନ ଥିଲେ ମଧ୍ୟ ଚମାରଗାଁ ଗ୍ରାମର କୃଷ୍ଣ ପ୍ରସାଦ ଜେନା ଓ ଚନ୍ତାମଣି ଜେନା, ଗୁଣ୍ଡିଚେଶୋଳର ଗଖାଲ ଚନ୍ଦ୍ର ସିଂ, ଖୁଆଡ଼ର ଫକୀର ପାଣ୍ଡ, ମଥୁରାନାଥର ଅବିନାଶ ବେହେରା, ଭଗୁପୁରର ଗୋବିନ୍ଦ ଗିରି, ଗୁଫଳର ବିଦ୍ୟାଧର ଭୂୟାଁ, ଖଇବଣିଆର ଲକ୍ଷ୍ମୀନାରାୟଣ ଗୋସ୍ୱାମୀ, ଫକୀର ଦାସ ଏବଂ କାନପୁରର ନେଶାନନ୍ଦ ଦାସ ପ୍ରଭୃତି ଏକମନ ଓ ଏକ ପ୍ରାଣରେ ଆନ୍ଦୋଳନରେ ଝାସ ଦେଇ ତାକୁ ସଫଳ କରିବାରେ ଲାଗି ପଡ଼ିଲେ ।

ଖୁଆଡ଼ ଓ ଧଣ୍ଡାରଚଲ୍ଲି ହାଟରେ ଇଂରେଜ ସରକାରର କୁଶ ପୁତ୍ତଳିକା ଦାହ କରାଗଲା । ଚୌକିଦାର ଟିକସ ଓ ଖଜଣା ଦେବା ବନ୍ଦ ହେଲା । ସମଗ୍ର ଫତିଆବାଦ ଅଞ୍ଚଳରେ ନିଆଁ ଲାଗିଗଲା । ଲୋକେ ମାତି ଉଠିଲେ । ପ୍ରତିବଦଳରେ ପୋଲିସ ଅତ୍ୟାଚାର ମଧ୍ୟ ବଢ଼ିଗଲା । ହାଟରେ ବାଟରେ ପୋଲିସ ଯେଉଁଠି ଯାହାକୁ ସନ୍ଦେହ କଲା, ସେ ବିଚାରା ମାଡ଼ ଖାଇଲା ବା ଗିରଫ ହେଲା । ଭାରତ ଛାଡ଼ ଆନ୍ଦୋଳନର କଥା କେହି ଯଦି ଆଲୋଚନା କଲା, ମହାତ୍ମା ଗାନ୍ଧୀଙ୍କର ଜୟଧ୍ୱନି କଲା, ବନ୍ଦେ ମାତରମ୍ ବା ଜୟହିନ୍ଦ୍ ବୋଲି କହିଲା ତେବେ ତାର ଆଉ ରକ୍ଷା ନାହିଁ । ନିଶ୍ଚିତ ଭାବରେ ସେ ସରକାରର ଆକ୍ରୋଶର ଶୀକାର ହେଲା । ଗିରଫ ହୋଇଥିବା ସବୁ ଲୋକଙ୍କୁ ବିଚାର ପାଇଁ କୋର୍ଟକୁ ପଠାଯାଉ ନଥାଏ । ପୋଲିସ ହାଜତରେ କେବେ କେବେ ସାତ ଆଠଦିନ ରଖି ନିର୍ଯ୍ୟାତନା ଦେଇ, ଅପମାନିତ କରି ଦୂର ସ୍ଥାନକୁ ନେଇ ଛାଡ଼ି ଦେଉଥାଏ । ପ୍ରତିବାଦ କରିବାର ସୁଯୋଗ ନ ଥାଏ । ପ୍ରତିବାଦ କଲେବି ଶୁଣିବ କିଏ ?

ଏଣିକି ଦିନ "ଫରାସୀ ଚନ୍ଦନନଗର"ରେ ରହି ଇଂରେଜ ବିରୋଧୀ ଓ "ଭାରତ ଛାଡ଼" ଆନ୍ଦୋଳନ ଚଳାଇବା ସମ୍ଭବ ହେଲନାହିଁ । ଚତୁର ଇଂରେଜ ସରକାର ଦ୍ୱିତୀୟ ବିଶ୍ୱଯୁଦ୍ଧରେ ତାର ମିତ୍ରରାଷ୍ଟ୍ର ଫ୍ରାନସ୍ ସହିତ ରାଜିନାମା କରିଥିବାରୁ କୌଣସି ଭାରତୀୟଙ୍କୁ ଫରାସୀ ରାଜ୍ୟ ବା ତାର ଉପନିବେଶରେ ରହି ବ୍ରିଟିଶ ସରକାର ବିରୋଧୀ ଆନ୍ଦୋଳନ ଚଳାଇବା ବା ଆନ୍ଦୋଳନକାରୀଙ୍କୁ ଆଶ୍ରୟ ଦେବାକୁ ଫ୍ରାନସ୍ ମନାକଲା । ବିପଦର ଆଶଙ୍କା କରି ବାଲେଶ୍ୱର ଜିଲ୍ଲାର "ଭାରତ ଛାଡ଼" ସଂଗ୍ରାମର ସେନାପତି ଗୌରଚନ୍ଦ୍ର ଦାସ ପୋଲିସ ଆଖିରେ ଧୂଳିଦେଇ ଫରାସୀ ଚନ୍ଦନନଗରରୁ ଉଭାନ ହୋଇଗଲେ । ହଠାତ୍ ଦିନେ ସେ ଆସି ସରତହାର ହରିବାବୁଙ୍କ ଗିରିଙ୍କ ଘରେ ଚାଲିଥିବା "ସତ୍ୟାଗ୍ରହୀ ଶିବିର"ରେ ପହଞ୍ଚିଗଲେ । ସାଥିରେ ଗୋପ ଗ୍ରାମର ସତ୍ୟାଗ୍ରହୀ ହରେନ୍ଦ୍ର ନାଥ ଘୋଷ । ଉଭୟେ ଛଦ୍ମବେଶୀ ବାବାଜୀ । ପ୍ରଥମେ ସେମାନଙ୍କୁ ଛଦ୍ମବେଶୀ ପୋଲିସ ବୋଲି ଭାବି ସତ୍ୟାଗ୍ରହୀମାନେ ଡରି ଯାଇଥିଲେ । ମାତ୍ର ପରେ ପରିଚୟ ହେଲା । ସମସ୍ତେ ସଭକ୍ତି ପ୍ରଣାମ କଲେ । ପୋଲିସ ତାଙ୍କ ପିଚ୍ଛା କରିଥାଏ । ତେଣୁ ସମସ୍ତଙ୍କ ପରାମର୍ଶରେ ଶାଳବଣି ଗ୍ରାମର ଗୋପୀନାଥ ତଗରଙ୍କ ଦେ.ତାଳା କୋଠାରେ ତାଙ୍କୁ ଲୁଚାଇ ରଖାଗଲା । ସେଇଠୁ ନିର୍ଦ୍ଦେଶ ଦେଇ ସେ ସମଗ୍ର ବାଲେଶ୍ୱର ଜିଲ୍ଲାର ଆନ୍ଦୋଳନ ପରିଚାଳନା କଲେ । ତାଙ୍କ ପରାମର୍ଶରେ ଜଳେଶ୍ୱର ଥାନା ପୋଡ଼ିବା ଓ ରାଜଘାଟ ଠାରେ ରେଳପୋଲ ନଷ୍ଟ କରି ଦେବାର ସ୍ଥିରହେଲା ।

ରାଜଘାଟ ଠାରେ ରେଳପୋଲ ନଷ୍ଟ କରିଦେବା ପାଇଁ ଆବଶ୍ୟକୀୟ ଯନ୍ତ୍ରପାତି ସଂଗ୍ରହର ଦାୟିତ୍ୱ ନେଲେ ଗଙ୍ଗାଧର ଗିରି, ଜଗନ୍ନାଥ ଦାସ ଅଧିକାରୀ, ମୁରାରୀ ପାତ୍ରୀ ଓ ପଦ୍ମନାଭ କାନ୍ତ ।

ମାତ୍ର ସେ ସବୁ ଦରକାର ମୁତାବକ ନ ମିଳିବାରୁ ସେ ଯୋଜନା ପରିତ୍ୟକ୍ତ ହେଲା । କେବଳ ଟେଲିଫୋନ ତାର କାଟି ଦିଆଗଲା ।

ସମଗ୍ର ଜିଲ୍ଲାରେ ପୋଲିସ ପାଗଳ ଭଳି ଖୋଜି ବୁଲିଲା ଗୌରଚନ୍ଦ୍ର ଦାସଙ୍କୁ । ଲୁଚିରହି କାମ କରିବା କ୍ରମେ ଅସୁବିଧା ଜନକ ହେଲା । ପୁଣି ଗୋଟିଏ ଜାଗାରେ ବେଶୀ ଦିନ ଏ ଭଳି ରହିବା ସମ୍ଭବ ନୁହେଁ । ସମଗ୍ର ଜିଲ୍ଲାରେ ଚାଲିଥିବା ଆନ୍ଦୋଳନ ତାଙ୍କୁ ତଦାରଖ କରିବାକୁ ପଡ଼ିବ । ତେଣୁ ଏକ ସାଧାରଣ ସଭାରେ ପ୍ରକାଶ୍ୟରେ ଆତ୍ମ ପରିଚୟ ଦେବାକୁ ସେ ସ୍ଥିର କଲେ । ପ୍ରାୟ ୧୫ଦିନ ଲୁଚି ରହିବା ପରେ କଳଡ଼ା ଗାଁର ପଦାରେ ଏକ ବଡ଼ ଧରଣର ସଭା ହେଲା ତା ୨୫ । ୧୦ । ୧୯୪୨ ରିଖରେ । ଶହ ଶହ ଲୋକ ସଭାରେ ଯୋଗଦେଲେ । ମୋରଗାଁର କୃଷ୍ଣ ପ୍ରସାଦ ଜେନା ସଭାପତି ହେଲେ । ଭାରତଛାଡ଼ ଆନ୍ଦୋଳନର ଉଦ୍ଦେଶ୍ୟ ଓ କାର୍ଯ୍ୟ-ପନ୍ଥା ସଂପର୍କରେ ପଦ୍ମନାଭ କାନ୍ତ ଓ ଜଗନ୍ନାଥ ଦାସ ଅଧିକାରୀ ସମସ୍ତଙ୍କୁ ବୁଝାଇଲେ । ଶାଳବଣିର ଗୋପୀନାଥ ଡଗରଙ୍କ ସାଥୀରେ ଆଗରୁ ଆସି ଛଦ୍ମବେଶରେ ଗୌରବାବୁ ସଭାରେ ବସିଥାନ୍ତି । ହଠାତ୍ କୃଷ୍ଣ ପ୍ରସାଦ ଜେନା ତାଙ୍କୁ ଚିହ୍ନାଇ ଦେଲେ ଯେ ସେ ହେଉଛନ୍ତି ସେନାପତି ଗୌରବାବୁ ଯେ କି ଇଂରେଜ ଆଖିରେ ଧୂଳି ଦେଇ ଛଦ୍ମବେଶରେ ସମଗ୍ର ଜିଲ୍ଲାରେ ଘୂରିବୁଲି ଭାରତଛାଡ଼ ଆନ୍ଦୋଳନ ଚଳାଇଛନ୍ତି । ଲୋକେ ଚମକିଲେ । ନିଜର ଓଜସ୍ୱୀ ଭାଷଣରେ ସମସ୍ତଙ୍କୁ ମନ୍ତ୍ର ମୁଗ୍ଧ କରିଦେଲେ । ଶେଷରେ ସତ୍ୟାଗ୍ରହୀ ବାହିନୀର ସେନାପତି ଭାବରେ ସମଗ୍ର ଫତେଆବାଦ ପ୍ରଗଣାକୁ ସେହି ଦିନଠାରୁ ସ୍ୱାଧୀନ ହେଲା ବୋଲି ଘୋଷଣା କଲେ । ଅର୍ଥାତ୍ ସେହି ଦିନଠାରୁ ବ୍ରିଟିଶ ସରକାର ଶାସନ ସେ ଇଲାକାରେ ଚାଲିବନି ।

ଜମିଦାରଙ୍କୁ ଖଜଣା କିମ୍ବା ସରକାରଙ୍କୁ ଟିକସ ଦିଆଯିବ ନାହିଁ । କୋର୍ଟ କଚେରୀକୁ ମୋକଦ୍ଦମା ଯିବନି । ଏ ଅଞ୍ଚଳକୁ ପୋଲିସ କର୍ମଚାରୀଙ୍କର ପ୍ରବେଶ ନିଷିଦ୍ଧ ହେଲା । ବିପୁଳ କରତାଳି ଧ୍ୱନିରେ ଏ ପ୍ରସ୍ତାବ ଗୃହୀତ ହେଲା ।

ଆତ୍ମପ୍ରକାଶ ପରେ ସେଠାରେ ଆଉ ରହିବା ଆଦୌ ନିରାପଦ ନୁହେଁ । ଗୋପୀନାଥ ଡଗର, ଗଙ୍ଗାଧର ଗିରି, ପଦ୍ମନାଭ କାନୁ ଓ ଜଗନ୍ନାଥ ଦାସ ଅଧିକାରୀ ତାଙ୍କୁ ନେଇ ଗୋବର ହରେନ୍ଦ୍ରନାଥ ଘୋଷଙ୍କ ଘରେ ପହଞ୍ଚାଇ ଦେଲେ । ସେଇ ରାତିରେ ସେ ଯାଇ ପହଞ୍ଚିଲେ ଖାଡ଼ପିମ୍ପଳ ଗାଁର ଅନ୍ୟତମ ସତ୍ୟାଗ୍ରହୀ ମାନଗୋବିନ୍ଦ ଅଣ୍ଡିଅଙ୍କ ଘରେ । ରାତି ପାହି ଆସୁଥାଏ । ତେଣୁ ଜଗନ୍ନାଥ ଦାସ ଅଧିକାରୀ ଓ ପଦ୍ମନାଭ କାନୁ ସେଠାରୁ ଫେରି ଅଲଳପୁରର ବ୍ରାହ୍ମଣଙ୍କର ଦାସ ମହାପାତ୍ରଙ୍କ ଘରେ ଦିନରେ ଲୁଚି ରହି ରାତିରେ ସନ୍ତରାସ୍ଥ "ସତ୍ୟାଗ୍ରହ" ଶିବିରକୁ ଫେରି ଆସିଲେ । ସେତେବେଳକୁ ସେ ଦୁଇଜଣଙ୍କ ନାମରେ ଗିରଫ ପରୱାନା ଜାରି ହୋଇ ସାରିଥାଏ ।

## ସ୍ୱାଧୀନ ପଞ୍ଚଆବାଦ ପ୍ରଗଣା

ପଞ୍ଚଆବାଦ ପ୍ରଗଣାର ପୂର୍ବ ଓ ଦକ୍ଷିଣ ଦିଗରେ ସୁବର୍ଣ୍ଣରେଖା ନଦୀ ଏବଂ ପଶ୍ଚିମ ଓ ଉତ୍ତର ଦିଗରେ ମୟୂରଭଞ୍ଜ ଗଡ଼ଜାତ ରାଜ୍ୟ ରହିଥିଲା । ସେହି ସ୍ଥଳ ପଶ୍ଚିମରେ ଘନ ଜଙ୍ଗଲ ଘେରି ରହିଥାଏ । ଏହିଭଳି ପ୍ରାକୃତିକ ପ୍ରତିବନ୍ଧକର ସୁଯୋଗ ନେଇ ୧୯୪୨ ମସିହା ଅକ୍ଟୋବର ୨୫ ତାରିଖରେ ସମଗ୍ର ପଞ୍ଚଆବାଦ ପ୍ରଗଣାର ସ୍ୱାଧୀନତା ଘୋଷଣା କରାଯାଇଥାଏ ।

ବର୍ଷାଦିନ । ସୁବର୍ଣ୍ଣରେଖାରେ ଦୁଇ କୂଳ ଭର୍ତ୍ତିହୋଇ ପାଣି ବୋହି ଯାଉଛି । ସୁବର୍ଣ୍ଣରେଖା କୂଳରେ ଥିବା ଶିଙ୍କରପୁର, ବଜାର ଶୋଳ,

ଗୁରୁଦାସପୁର, ମାଳପାଳ ଓ ବେଡ଼େଇସାହି ପ୍ରଭୃତି ନଦୀ ଘାଟ ଗୁଡ଼ିକରେ ଥିବା ନୌକା ସବୁକୁ ଲୁଚାଇ ଦିଆଗଲା । କର୍ମୀମାନେ ଧନଗଡ଼ି ନଦୀ କୂଳରେ ପହରା ଦେଲେ ଯେମିତି କି ପୋଲିସ କୌଣସି ପ୍ରକାରେ ଜଳେଶ୍ୱର ପଟୁ ଫତିଆବାଦ ଅଞ୍ଚଳରେ ପ୍ରବେଶ କରି ନ ପାରେ । ଗୁରୁଦାସପୁର ଘାଟ ଦେଇ ରାଇବଣିଆ ଅଞ୍ଚଳରେ ପ୍ରବେଶ କରିବାପାଇଁ ପୋଲିସ ଚେଷ୍ଟା କରିଥିଲେ । ଘାଟ ଦାୟିତ୍ୱରେ ଥିଲେ ସୋର ଅନନ୍ତପୁରର ରାମକୃଷ୍ଣ ବାରିକ । ତାଙ୍କର ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ପୋଲିସକୁ କେହି ନୌକା ଦେଇ ନଥିଲେ । ପରେ ଏହି କାରଣରୁ ପୋଲିସ ତାଙ୍କୁ ଅନେକ ଶାରୀରିକ ନିର୍ଯ୍ୟାତନା ଦେଇଥିଲା ।

ସେହିଭଳି ଉତ୍ତର ଓ ପଶ୍ଚିମ ଦିଗରେ ଥିବା ଘନ ଜଙ୍ଗଲ ଓ ବିଭିନ୍ନ ରାସ୍ତାଘାଟ ଉପରେ ସତ୍ୟାଗ୍ରହୀ ମାନେ ନଜର ରଖିଥିଲେ । ରାଇବଣିଆ ଅଞ୍ଚଳରେ କୌଣସି ଚୌକିଦାର ବା ଦଫାଦାର ଥାନାକୁ ଯିବାକୁ ଦିଆଗଲା ନାହିଁ । ଥାନାକୁ ଯିବା ବାରି ଦିନ ସେମାନଙ୍କ ଘରକୁ ସତ୍ୟାଗ୍ରହୀମାନେ ଯାଇ ଥାନାକୁ ନ ଯିବାକୁ ବୁଝାଉ ଥିଲେ ଓ କେହି କଥା ନ ମାନିଲେ, ତାକୁ ଧମକ ଚମକ ମଧ୍ୟ ଦେଉଥିଲେ ।

କେହି କୋର୍ଟ କଚେରୀକୁ ନ ଯାଇ ପଞ୍ଚାୟତ ମାଧ୍ୟମରେ ଗୋଳମାଳ ଗୁଡ଼ିକର ମୀମାଂସା କଲେ । ଖଜଣା ଓ ଚୌକିଦାରୀ ଟିକସ ଦେବା ବନ୍ଦ ହେଲା । କେତେକ ଜାଗାରେ ରାସ୍ତାରେ ଘାଇ କରି ଦିଆଗଲା । ଗାଁକୁ ଗାଁ ଲୋକମାନେ ବୁଲି ସଭମାନ କଲେ । ଲୋକଙ୍କ ମେଳ ବଢିଲା । କୃଷ୍ଣପ୍ରସାଦ ଜେନା, ଜଗନ୍ନାଥ ଦାସ ଅଧିକାରୀ, ପଦ୍ମନାଭ କାନ୍ତ, ନେତ୍ରାନନ୍ଦ ଦାସ, ଶିରିଷ ଦେ,

ଲକ୍ଷ୍ମୀନାରାୟଣ ଗୋସ୍ୱାମୀ, ସତ୍ୟେନ୍ଦ୍ର ନାଥ ଡଗର ଓ ଗଙ୍ଗାଧର ମିଶ୍ର ପ୍ରଭୃତି ଏହାର ନେତୃତ୍ୱ ନେଲେ । କେତେବେଳେ କେଉଁ ଗାଁରେ ରାତିରେ ରହି ଯାଆନ୍ତି କର୍ମୀମାନେ । କେଉଁଠି ଲୋକେ ଖାଇବାକୁ ଦିଅନ୍ତି ତ କେଉଁଠି ସରକାର ବିରୋଧୀ ଲୋକ ବୋଲି ଏମାନଙ୍କୁ ଖାଇବାକୁ ଦିଅନ୍ତିନି ।

ଆଶୁ କବି ରୂପଫଳର ଶ୍ରୀଧର ଚରଣ ମିଶ୍ର ଓ ଶାଳବଣିର ଭଗବାନ ଚନ୍ଦ୍ର ପାଣି ଜାତୀୟତା ବୋଧକ ସଙ୍ଗୀତ ମାନ ରଚନା କରି ଯୁବକମାନଙ୍କ ମୁଖରେ ଗ୍ରାମଆଡ଼େ ଗାନ କରାଇଲେ । ଫଳରେ ସାଧାରଣ ଲୋକଙ୍କ ଭିତରେ ଚଞ୍ଚଳତା ଦେଖାଦେଲା ଓ ସେମାନେ ଏ ଆନ୍ଦୋଳନ ପ୍ରତି ସହାନୁଭୂତିଶୀଳ ହୋଇ ଉଠିଲେ । ଉଭୟେ ପ୍ରାଥମିକ ଶିକ୍ଷକ ଥିଲେ ମଧ୍ୟ ଏ ଜାତୀୟ କାର୍ଯ୍ୟରେ ସେମାନେ ତାଙ୍କର ପାରୁ ପର୍ଯ୍ୟନ୍ତ ସାହାଯ୍ୟ କରୁଥିଲେ ।

ଏ ଅବରୋଧ ଅବସ୍ଥାରେ ପଞ୍ଚଆବାଦ ପ୍ରଗଣା ପନ୍ଦର ଦିନରୁ ଅଧିକ ସମୟ ରହିବା ପରେ ହଠାତ୍ ଦିନେ ପୋଲିସ ଫୌଜ ପଶ୍ଚିମ ପଟର ଜଙ୍ଗଲ ରାସ୍ତା ଦେଇ ଏ ଅଞ୍ଚଳକୁ ପ୍ରବେଶ କଲେ । ରାଇବଣିଆର 'ଗାନ୍ଧୀ' ଭାବରେ ପରିଚିତ ସରଡିହାର ସତ୍ୟେନ୍ଦ୍ର ନାଥ ଡଗରଙ୍କ ଘର ପୋଲିସ ଫୌଜ ଘେରାଉ କରି ସର୍ଚ୍ଚ କଲେ ମାତ୍ର ଆଗତୁରା ଖବର ପାଇ ସେ ଅନ୍ୟତ୍ର ଚାଲି ଯାଇଥାନ୍ତି । ତାଙ୍କୁ ନପାଇ ପୋଲିସ ଫୌଜ କ୍ରୋଧା-ନ୍ୱିତ ହୋଇ ତାଙ୍କର ଦୁଇଜଣ ନାବାଳକ ପୁଅଙ୍କୁ ଥାନାକୁ ଧରିନେଇ ଶାସନ କଲେ । ଉତ୍ପୀଡ଼ିତ କରାଇଲେ ସେମାନଙ୍କ ବାପାଙ୍କ ଖବର ଜାଣିବା ପାଇଁ । ମାତ୍ର ସେମାନଙ୍କ ଠାରୁ କିଛି ସନ୍ଧାନ ନ ପାଇ ବାଧ୍ୟ ହୋଇ ପୋଲିସ ସେମାନଙ୍କୁ ଛାଡ଼ିଦେଲା । ପଦ୍ମନାଭ କାନ୍ତ, ଜଗନ୍ନାଥ ଦାସଅଧିକାରୀ,କୈଳାସଚନ୍ଦ୍ର ସିଂ,କୃଷ୍ଣ ପ୍ରସାଦ ଜେନା,ତ୍ରିଲୋଚନ ଦାସ

ରଖାଲ ଚନ୍ଦ୍ର ସିଂ, ଗଙ୍ଗାଧର ଗିରି, ପଦ୍ମନାଭ ବାରିକ, ଗୋବିନ୍ଦ ଚନ୍ଦ୍ର ପାତ୍ରୀ, କଣାରାମ ଦାସ, ଫଣୀ ଭୂଷଣ ଦାସ, କଣାରାମ କୁଅଁର, ଶିରିଷ କୁମାର ଦେ, ଗୋବିନ୍ଦ ପ୍ରସାଦ ଗିରି, ଅବିନାଶ ବେହେରା, ଦିବାକର ଗିରି, ବିଦ୍ୟାଧର ଭୂୟାଁ, ଫକୀର ଦାସ, ଫକୀର ପାତ୍ର, କାର୍ତ୍ତିକ ବେହେରା, ମାଧବାନନ୍ଦ ଦାସ ଅଧିକାରୀ, ନିତ୍ୟାନନ୍ଦ ଦାସ, ଲକ୍ଷ୍ମୀନାରାୟଣ ଗୋସ୍ୱାମୀ ଓ କ୍ଷେତ୍ରମୋହନ ଜେନା ପ୍ରଭୃତି ଭାରତ ଛାଡ଼ ବା ଅଗଷ୍ଟ କ୍ରାନ୍ତି ଆନ୍ଦୋଳନ ଓ ପଞ୍ଚଆବାଦର ସ୍ୱାଧୀନତା ଘୋଷଣାରେ ସକ୍ରିୟ ଅଂଶ ଗ୍ରହଣ କରି ପୋଲିସ ଜୁଲୁମର ଶୀକାର ହୋଇଥିଲେ ଓ ଜମିବାଡ଼ି ହରାଇ ଥିଲେ । ସେମାନଙ୍କ ସହିତ ସେମାନଙ୍କ ପରିବାର ଉପରେ ମଧ୍ୟ ନାନା ରକମର ଶାରୀରିକ ଓ ମାନସିକ ଅତ୍ୟାଚାର କରା ଯାଇଥିଲା । ନେତାମାନଙ୍କ ଉପରେ ଗିରଫ ପରୱାନା ଜାରି କରାଗଲା । ଫଳରେ ସେମାନେ ଧରା ନଦେଇ ଆତ୍ମ ଗୋପନ କଲେ ।

ଅଗଷ୍ଟ ବିପ୍ଳବର ଏକ ଉଲ୍ଲେଖଯୋଗ୍ୟ ଘଟଣା ହେଲା ଜଳେଶ୍ୱର ଥାନା ପୋଡ଼ି ଅଭିଯାନ । ଏହା ଆଗରୁ ୧୪ । ୯ । ୧୯୪୨ ତାରିଖରେ ଭଣ୍ଡାର ପୋଖରୀ ଥାନା ପୋଡ଼ି ଘଟଣା ହିଂସାତ୍ମକ ହୋଇ ଯାଇଥାଏ । ସେଥିପାଇଁ ପୁରିଆଡ଼େ ପୋଲିସ ସତର୍କ ହୋଇ ଯାଇଥାନ୍ତି । ସେଦିନ ଥାଏ ସୋମବାର । ଜଳେଶ୍ୱରର ସାପ୍ତାହିକ ହାଟ ପାଳି । ଶହ ଶହ ଲୋକ ହୁଆଁ ! ହୁଳା ଧରି ସ୍ଲୋଗାନ ଦେଇ ବିପ୍ଳବୀ ସତ୍ୟେନ୍ଦ୍ର ନାଥ ଭଗତ ଓ ହରେନ୍ଦ୍ର ନାଥ ଘୋଷଙ୍କ ନେତୃତ୍ୱରେ ଜଳେଶ୍ୱର ଥାନା ପୋଡ଼ିବା ପାଇଁ ଆଗେଇ ଗଲେ । ପୋଲିସ ଅଫିସର ବହୁତ ବୁଝାଇଲେ । ଲୋକେ ମାନିଲେ ନାହିଁ । କ୍ରମେ ବିଶୃଙ୍ଖଳା ଦେଖାଦେଲା ଲାଠିଚାର୍ଜ ହେଲା । ପୋଲିସର ଲାଠି ମାଡ଼ରେ ହରେନ୍ଦ୍ର ଘୋଷ,

ଶିଶିର କୁମାର ଦେ ଓ ଗୋବିନ୍ଦ ଗିରି ପ୍ରଭୃତି ଅନେକ କର୍ମୀ ଓ ସାଧାରଣ ଲୋକ ଲାଣ୍ଠିଆ ଖାଇବା ହେଲେ । ଯିଏ ଯୁଆଡ଼େ ପାରେ ପଳାଇ ଗଲେ । ସତ୍ୟେନ୍ଦ୍ର ନାଥ ଡଗର ଧରା ପଡ଼ିଲେ । ତାଙ୍କ ନାମରେ ଡି: ଆଇ: ଆର:ରେ ମୋକଦ୍ଦମା ରୁଜୁ ହେଲା । ବିଚାରରେ ସେ ଛଅ ମାସ ଜେଲ ଦଣ୍ଡର ଆଦେଶ ପାଇଲେ ।

କଟ୍ଟୁଢନ ଧରି କପିଳ ଦାସ ସରଡିହା 'ସତ୍ୟାଗ୍ରହ ଶିବିରକୁ' ନ ଆସିବାରୁ ଅଗଷ୍ଟ ବିପ୍ଳବର 'ବୁଲେଟିନ' ଆସି ପାରିଲା ନାହିଁ । ଫଳରେ ଅନ୍ୟତ୍ର ଘଟୁଥିବା ଆନ୍ଦୋଳନର ଖବର କିଛି ଜଣା ପଡ଼ିଲାନି । ଶେଷରେ ପଦ୍ମନାଭ କାନ୍ତ ଛଦ୍ମବେଶରେ ଜଳେଶ୍ୱର ଗଲେ । ସେତେବେଳକୁ ତାଙ୍କ ନାମରେ ଗିରଫ ପରୱାନା ଜାରି ହୋଇ ସାରିଥାଏ । ଜଳେଶ୍ୱର ବଡ଼ ବଜାର ଛକରେ ପୋଲିସ ଏ: ଏସ୍: ଆଇ: ସୀତାରାମ ଦେ ସାଇକେଲରେ ଯାଉଥିଲେ । ସେ ତାଙ୍କୁ ଚିହ୍ନି ପାରି ଗିରଫ କରିବା ଉଦ୍ଦେଶ୍ୟରେ ଧରି ପକାଇଲେ । ଚୂଡ଼ାମଣିପୁର ଗ୍ରାମର ଦଫାଦାର କାଳି ଚରଣ ଗିରି ମଧ୍ୟ ସେଠାରେ ପହଞ୍ଚି ଗଲେ ।

ଶ୍ରୀ କାନ୍ତ ଉଭୟଙ୍କୁ ଧକ୍କା ମାରି ଦୌଡ଼ି ପଳାଇ ଯାଇ ଜଳେଶ୍ୱର ପୁରୁଣା ବଜାରର ଗୋଟିଏ ଘରେ ଲୁଚିଗଲେ । ପୋଲିସ ଯେତେ ଖୋଜିଲେ ମଧ୍ୟ ତାଙ୍କୁ ପାଇଲେ ନାହିଁ । ପୋଲିସ ଆଖିରେ ଧୂଳି ଦେଇ ରାତିରେ ଯାଇ ଶାନ୍ତୁଆ ଗାଁର ସଂଗ୍ରାମୀ ପୂର୍ଣ୍ଣଚନ୍ଦ୍ର ସେନାପତିଙ୍କ ଘରେ ପହଞ୍ଚିଲେ । ତାଙ୍କ ପରାମର୍ଶରେ ସେହି ଗାଁର ଅନ୍ୟ ଜଣଙ୍କ ଘରେ ଲୁଚିଲେ ଓ ଭୋରରୁ ସେଠାରୁ ଚାଲିଯାଇ ମାଳପାଳର ନୌକା ଘାଟରେ ନଦୀ ପାରି ହେଲେ । ମାତ୍ର ସେଠାରେ ମଧ୍ୟ ପୋଲିସ ଜଗିଥିବାର ଦେଖିଲେ । ତେଣୁ ନଦୀ କୂଳରେ ଥିବା

ବଡ଼ବଡ଼ ବୁଦା, ପଣବା ବାଡ଼ ଓ ଗଛ ଭିତରେ ଗୁପ୍ତରେ ଯାଇ ଦକ୍ଷିଣ ପ୍ରହରାଜପୁର କାର୍ତ୍ତିକ ବେହେରାଙ୍କ ଘରେ ଯାଇ ଲୁଚି ରହିଲେ । ପୋଲିସ ଖବର ପାଇ ସେଠାରେ ପହଞ୍ଚିଲେ । ଘର ସର୍ଚ୍ଚ ହେଲା । ଉପସ୍ଥିତ ବୁଦ୍ଧି ପ୍ରୟୋଗ କରି ସେ ଶ୍ରୀ ବେହେରାଙ୍କ ସ୍ତ୍ରୀଙ୍କ ସାଥିରେ ନିଜେ ସ୍ତ୍ରୀ ବେଶ ହୋଇ କଳସୀ କାଖରେ ନେଇ ପାଣି ଆଣିବାକୁ ବାହାରିଗଲେ । ସେତେବେଳେ ଗାଁ ଗହଳର ସ୍ତ୍ରୀ ଲୋକମାନେ ମୁଣ୍ଡରେ ହାତେ ଓଢ଼ଣା ଦେଇ ଘରୁ ବାହାରକୁ ଆସୁଥିଲେ । ତେଣୁ ତାଙ୍କୁ ଚିହ୍ନିବାର ଉପାୟ ନଥିଲା । ତାପରେ ସେ ଅନ୍ୟ ଏକ ରାସ୍ତାଦେଇ ରାତିରେ ସରଡିହାର 'ସତ୍ୟାଗ୍ରହୀ ଶିବିରରେ' ପହଞ୍ଚିଗଲେ । ପୋଲିସକୁ ମାଡ଼ ମାରିବା ଓ ଘର୍ଘଦନ ଧରା ନ ପଡ଼ିବା ଯୋଗୁଁ ତାଙ୍କ ଘର କୋଇକ କରି ଅସ୍ଥାବର ସମ୍ପତ୍ତି ନିଲାମ କରିବା ପାଇଁ ଓ ଦରକାର ହେଲେ ଘରେ ନିଆଁ ଲଗାଇ ଦେବାକୁ ଜିଲା ମାଜିଷ୍ଟ୍ରେଟ ଆଦେଶ ଦେଇଥିଲେ । ରାତିରୁ ତାଙ୍କ ଘର ଘେରାଉ କଲେ । ଘରର କବାଟ କେହି ନ ଖୋଲିବାରୁ ତାଙ୍କ ଘରେ ନିଆଁ ଲଗାଇଦେବାର ସ୍ଥିର କରି ଘୋଷଣା କରାଗଲା । ତାଙ୍କ ଖୁଡ଼ୁ ତାଙ୍କ ଘର ତାଙ୍କ ଘରକୁ ଲାଗିଥାଏ । ନଡ଼ା ଛପର ଘର । ଖୁଡ଼ୁ ତାଙ୍କ ଘର ଏହା ଫଳରେ ପୋଡ଼ି ଯିବ ବୋଲି ସେ ପ୍ରତିବାଦ କଲେ । ତେଣୁ ଶ୍ରୀ କାନ୍ତଙ୍କ ଘରର କବାଟ ଭାଙ୍ଗି ଘରେ ପଶି ଧାନ ଗୁଣ୍ଡଳ, କଂସା ବାସନ ଓ ଅନ୍ୟାନ୍ୟ ଜିନିଷ ମଧ ତଥା ଗୋରୁ ଗାଈ ବାହାରକୁ କାଢ଼ି ଆଣି ନିଲାମ କରିବାକୁ ଘୋଷଣା କରାଗଲା । ପ୍ରକୃତରେ ଶ୍ରୀ କାନ୍ତ ସେତେବେଳେ ଘରେ ନଥିଲେ । ପୂର୍ବ ରାତିରେ ସେ କୁମୁଟିଆରେ ସଭା କରି ସେଇଠି ରହି ଯାଇଥିଲେ । କଣ୍ଟାପସୀ ଲୋକ କେତେଜଣ ସେଠାକୁ ଯାଇ ସବୁକଥା ଜଣାଇ ତାଙ୍କୁ ଆତ୍ମ ସମର୍ପଣ କରିବା ପାଇଁ ପରାମର୍ଶ ଦେଲେ । କାରଣ ଧାନ ଗୁଣ୍ଡଳ ଓ ଅନ୍ୟାନ୍ୟ ଜିନିଷ ପତ୍ର

ନୀଲାମ ହୋଇଗଲେ ତାଙ୍କର ସ୍ତ୍ରୀ ଓ ପିଲାମାନେ ଖାଇବାକୁ ନ ପାଇବେନ । ସେ ଘରକୁ ଫେରିଲେ ଓ ତାଙ୍କ ନାମରେ ଥିବା ଓ୍ୱାରେଣ୍ଟ ବଳରେ ପୋଲିସ ତାଙ୍କୁ ଗିରଫ କଲେ । ଦୁଇଟି ଦଫାରେ ମୋକଦ୍ଦମା ଚାଲିଲା । (୧) ଖଣ୍ଡିଆଡ଼ା ହାଟରେ ଗଙ୍ଗାଧର ଗିରି, ଶିତେଷ ଚନ୍ଦ୍ର ଦେ, ନେହାନନ୍ଦ ଦାସ ତଥା ଅନ୍ୟ ଲୋକ ମାନଙ୍କୁ ନେଇ ଯଗୁଲ (ହାଣ୍ଡିଆ) ଦୋକାନ ଲୁଟ୍‌ପାଟ୍ କରାଇବା ଓ (୨) ପୋଲିସକୁ ଜଳେଶ୍ୱରଠାରେ ପିଟିବା । ପ୍ରକୃତରେ ସେଦିନ ସେ ଖଣ୍ଡିଆଡ଼ା ହାଟ ଗୋଳମାଳ ବେଳେ ଉପସ୍ଥିତ ନଥିଲେ । ମାତ୍ର ଜଳେଶ୍ୱର ବଡ଼ ବଜାର ଛକରେ ପୋଲିସକୁ ଧକ୍କା ମାରିଥିବାରୁ ଆଂଶିକ ବଣତଃ ପୋଲିସ ତାଙ୍କୁ ଏ ଭଳି କେଶ୍‌ରେ ଜଡ଼ିତ କରି ଦେଇଥିଲା । ଜେଲ ହାଜତରେ ଥିବା ବେଳେ ସହବନ୍ଦୀ ନନ୍ଦକିଶୋର ଦାସ ଓ ମାଳତୀ ଚୌଧୁରୀଙ୍କ ପରାମର୍ଶରେ ସେ ନିଜେ ସରକାରୀ ସାକ୍ଷୀ ମାନଙ୍କୁ ଜେରା କଲେ । ସରକାରୀ ସାକ୍ଷୀ ଗୁରୁଜଣ ଯଥା କେଦାର ଜେନା, ନରେନ୍ଦ୍ର ପାତ୍ର, ପୋଲିସ ଏସ୍: ଆଇ: ଉସମାନ ଖାଁ ଓ ଅବକାରୀ ଦାରୋଗାଙ୍କ ବକ୍ତବ୍ୟରେ ବହୁତ ପାର୍ଥକ୍ୟ ପରିଲକ୍ଷିତ ହେଲା । ତେଣୁ ପ୍ରମାଣ ଅଭାବରୁ ପ୍ରଥମଟିରେ ନିର୍ଦ୍ଦୋଷରେ ଖଲାସ ହେଲେ ଓ ଦ୍ୱିତୀୟ ଅଭିଯୋଗରେ "ଭାରତ ରକ୍ଷା ଆଇନ" ବଳରେ ୬ ମାସ ଜେଲ ଦଣ୍ଡ ଭୋଗିଲେ ।

ଜଗନ୍ନାଥ ଦାସ ଅଧିକାରୀଙ୍କ ନେତୃତ୍ୱରେ ପଦ୍ମନାଭ ବାରିକ, ଗୋବିନ୍ଦ ଚନ୍ଦ୍ର ପାଡ଼ୀ, ରାଖାଲ ଚନ୍ଦ୍ର ସିଂ, କୈଳାସ ଚନ୍ଦ୍ର ସିଂ ଓ କାଶୀରାମ କୁଅଁର ପ୍ରଭୃତି ପୂର୍ବରୁ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ନୋଟିସ ଦେଇ ଥରେ ମଙ୍ଗଳବାର ଦିନ ଭଣ୍ଡାରିପଲ୍ଲୀ ଗାଁ ହାଟରେ ସଭାକରି ସ୍ୱତନ୍ତ୍ର ବାର୍ତ୍ତା ପ୍ରଚାର କଲେ । ସେ ସେଠାରେ ଗାଇଥିବା

ବିପ୍ଳବାତ୍ମକ ଗୀତର ଦୁଇଟି ଧାଡ଼ି ହେଲା "ଆସରେ ଆସରେ ସ୍ୱରାଜ ସୈନିକ ଆସ ଘର ମଦେ ମାଡ଼ି, ଇଂରେଜ ରାଜତ୍ୱ କରିବା ବିଲୁପ୍ତ ଆମେ ଗଜପତି ଜାତି।" ସେତେବେଳକୁ ତତ୍‌କାଳୀନ ଏସ୍: ଡ଼ି: ଓ: ରତ୍ନାକର ଷଡ଼ଙ୍ଗୀ ଓ ଜଳେଶ୍ୱର ଥାନାର ଏସ୍: ଆଇ: ପୋଲିସ ଫୌଜ ଆଣି ସଭା ସ୍ଥଳକୁ ଘେରାଉ କରି ସାରିଥାନ୍ତି । ତେଣୁ କେହି ପଳାଇ ଯାଇ ପାରିଲେନି । ପୋଲିସ ସେମାନଙ୍କୁ ନିର୍ଘାତ ମାଡ଼ ଦେଇ ଗିରଫ କଲା । କୋର୍ଟରେ ବିଚାର ଚାଲିଥିବା ବେଳେ ସରକାରୀ ସାକ୍ଷୀ ଏସ୍: ଡ: ଓ ରତ୍ନାକର ଷଡ଼ଙ୍ଗୀଙ୍କୁ ମାଜିଷ୍ଟ୍ରେଟ୍ ବସିବାକୁ ଚେୟାର ଦେବାପାଇଁ ଅର୍ଦ୍ଦଳିକୁ କହିଲେ । ଏହା ଦେଖି ଶ୍ରୀ ଦାସ ଅଧିକାରୀ ମଧ୍ୟ ବସିବା ପାଇଁ ଚେୟାର ମାଗିଲେ । ମାଜିଷ୍ଟ୍ରେଟ ଆସାମୀଙ୍କୁ ବସିବା ପାଇଁ ଚେୟାର ଦେବାକୁ ରାଜି ହେଲେ ନାହିଁ । ମାତ୍ର ଜଗନ୍ନାଥ ବାବୁ ଯୁକ୍ତି ଦର୍ଶାଇଲେ ଯେ ସାକ୍ଷୀକୁ ବସିବା ପାଇଁ କୋର୍ଟ ତରଫରୁ ଚେୟାର ଦିଆଯାଉଛି । ତାହେଲେ ଆସାମୀକୁ କାହିଁକି ଦିଆ ନଯିବ ? ଏଯୁକ୍ତି ଶୁଣି ମାଜିଷ୍ଟ୍ରେଟ ସ୍ତବ୍ଧ ହେଲେ ଓ ଏସ୍: ଡ଼: ଓ:ଙ୍କ ପାଖରୁ ଚେୟାର ନେଇ ଯିବାକୁ ଆଦେଶ ଦେଲେ । ବିଚାରରେ ଜଗନ୍ନାଥ ଦାସ ଅଧିକାରୀଙ୍କୁ ଡ: ଆଇ: ଆର: ରେ ୬ ମାସ ଓ ଲୋକଙ୍କୁ ଉତ୍ତେଜିତ କଲାଭଳି ଗୀତ ଗାଇଥିବା ଯୋଗୁଁ ୩ ମାସ-ଏଇଭଳି ମୋଟରେ ୯ ମାସ ଜେଲ ଦଣ୍ଡ ମିଳିଲା । ଅନ୍ୟ ମାନଙ୍କୁ ୩ ମାସ ଲେଖାଏଁ କାରାଦଣ୍ଡ ଭୋଗିବାକୁ ପଡ଼ିଲା । ସେ ତା ୨୯ । ୪ । ୪୩ ରିଖରେ ଜେଲରୁ ଖଲାସ ହେଲେ ।

ଜେଲରେ ଥିବାବେଳେ ଶ୍ରୀ ପାତ୍ରୀଙ୍କ ଉପରେ ହୋଇଥିବା ଲାଠି ମାଡ଼ ଯୋଗୁଁ ତାଙ୍କର ଡାହାଣ ଗୋଡ଼ ଜଖମ ହୋଇ ଯାଇଥିଲା ଓ ମୃତ୍ୟୁ ପର୍ଯ୍ୟନ୍ତ ସେ ଭଲ ଭାବରେ ଚାଲିପାରୁ ନ ଥିଲେ ।

ପଦ୍ମନାଭ ବାରିକଙ୍କର ବାମହାତ ମଣିବନ୍ଧରେ ଲାଠି ମାଡ଼ର ଆଘାତ ଜନିତ ବ୍ୟଥା ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ରହିଥିଲା ଓ ମଣିବନ୍ଧ ଠାରୁ ହାତ ପାପୁଲି ବଙ୍କା ହୋଇ ଯାଇଥିଲା ।

ରାଖାଲ ଚନ୍ଦ୍ର ସିଂ ଜେଲରେ ଥିବାବେଳେ ୧୯୪୩ ମସିହା ଫେବୃୟାରିରେ ଦିନେ ଜେଲ କର୍ତ୍ତୃପକ୍ଷଙ୍କ ସହ ସବୁ କଥାରେ ଅସହଯୋଗ କଲେ । ସେ ଦିନ ଥାଏ ଶିବ ଚତୁର୍ଦ୍ଦଶୀ । ସେ ଗାଧୋଇଲେ ନାହିଁ କିମ୍ବା କିଛି କାମ ବି କଲେନାହିଁ । କାହାରି ସହିତ କଥାବାର୍ତ୍ତା କଲେ ନାହିଁ କିମ୍ବା କିଛି ଖାଇଲେ ନାହିଁ । ପୁଣି ଜେଲକୁ ଆସିବା ଦିନଠାରୁ "ସରକାର ସଲାମ" କରୁ ନଥିଲେ । ତେଣୁ ତାଙ୍କ ଉପରେ ଜେଲ କର୍ତ୍ତୃପକ୍ଷଙ୍କର ଭୀଷଣ ରାଗ ରହିଥାଏ । ସେଦିନ ଜେଲର ଆସି ଯେତେ ବୁଝାଇଲେ ବି ଫଳ କିଛି ହେଲାନି । ଶେଷରେ ତାଙ୍କୁ ନିର୍ଘାତ ମାଡ଼ ହେଲା । ଅଣ୍ଟା ତଳକୁ ହୋଇଥିବା ମାଡ଼ର ଆଘାତ ଜନିତ ଯନ୍ତ୍ରଣା ସେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଭୋଗୁଥିଲେ ।

ସରଡ଼ିହାର ଦିବାକର ଗିରିଙ୍କ ଘର ପୋଲିସ ସନ୍ଦେହରେ ଖାନତଲାସ କରିଥିଲେ । ମାତ୍ର କୌଣସି ଆପତ୍ତି ଜନକ ଜିନିଷ ପତ୍ର ନ ପାଇ ପୋଲିସ ନିରାଶ ହୋଇ ଫେରିଗଲେ ।

ଖଇରାଡ଼ ହାଟରେ ମଧ୍ୟ ଗୋଳମାଳ ହେଲା । ଦେଶୀ ମଦ ଓ ହାଣ୍ଡିଆ ଅବାଧରେ ବିକ୍ରି ଚାଲିଥାଏ । ଦିନେ ଗଙ୍ଗାଧର ଗିରି, କୁଆଁରିଆ ସାନ୍ତାଳ, ଶିରିଷ କୁମାର ଦେ, ଜଗନ୍ନାଥ ଦାସ ଓ ନେତ୍ରାନନ୍ଦ ଦାସ ପ୍ରଭୃତି ଲୋକମାନଙ୍କୁ ନେଇ ହାଣ୍ଡିଆ ଦୋକାନ ଆଗରେ ପିକେଟିଂ କରି ସେ ସବୁର ବିକ୍ରି ବନ୍ଦ କରିଦେଲେ ।

ପୁଣି ଇଂରେଜ ସରକାରଙ୍କ କୁଶ ପୁତ୍ତଳିକା ତିଆରି କରି ଦାହ କଲେ ଏବଂ "ଇଂରେଜ - ଭାରତ ଛାଡ଼" ବୋଲି ଧ୍ୱନି ଦେଲେ । ପୋଲିସ କେତେକଙ୍କୁ ଗିରଫ କଲା । ବିଚାରରେ ପ୍ରମାଣ ଅଭାବରୁ ହାଣ୍ଡିଆ ଦୋକାନ ନଷ୍ଟ କରିଥିବା ଅଭିଯୋଗରୁ ଶ୍ରୀ ଗଙ୍ଗାଧର ଗିରି ଓ କୁଆଁରିଆ ସାନ୍ତାଳ ମୁକ୍ତ ହେଲେ ବି ଇଂରେଜ ବିରୋଧୀ ଧ୍ୱନି ଦେଇଥିବାରୁ ଓ ସରକାରର କୁଶ ପୁତ୍ତଳିକା ପୋଡ଼ିଥିବାରୁ ୬ମାସ କାଳ ଜେଲ ଦଣ୍ଡ ପାଇଲେ । ଶ୍ରୀ ସାନ୍ତାଳଙ୍କର ବିପ୍ଳବାତ୍ମକ ଧ୍ୱନିରେ ପୋଲିସମାନେ ଭୀଷଣ ଉତ୍ତେଜିତ ହୋଇ ତାଙ୍କୁ ସାଂଘାତିକ ମାଡ଼ ଦେଲେ । ହସପିଟାଲରେ ଚିକିତ୍ସା ପରେ ସୁସ୍ଥ ହେଲେ ବି ଜେଲରୁ ଖଲାସ ହେବାର ଅଳ୍ପ ଦିନ ପରେ ସେହି ଆଘାତ ଜନିତ ରୋଗରେ ସେ ମୃତ୍ୟୁବରଣ କଲେ । ଏ ସମସ୍ତଙ୍କର ବିଚାର ବାଲେଶ୍ୱରର ମାଜିଷ୍ଟ୍ରେଟ ନଟବର ସାହୁଙ୍କ କୋର୍ଟରେ ହୋଇଥିଲା । ବିଚାରରେ ଜଗନ୍ନାଥ ଦାସ ପ୍ରମାଣ ଅଭାବରୁ ନିର୍ଦ୍ଦୋଷରେ ଖଲାସ ହେଲେ ( Case No. 48 of 1942 ) ।

ସେଦିନ ଖଣ୍ଟିଆଡ଼ ହାଟରେ ପୋଲିସର ଲାଠିମାଡ଼ ଓ ଅକଥନୀୟ ଅତ୍ୟାଚାରର ଫଳରେ ଅନେକ ସତ୍ୟାଗ୍ରହୀ ଖଣ୍ଟିଆଡ଼ ହାଟରୁ ପଳାଇ ଯାଇ ମହୁଡ଼ିମାର ବିଶିଷ୍ଟ ଧର୍ମ ବ୍ୟକ୍ତି ଭାଗବତ ଚନ୍ଦ୍ର ମଲ୍ଲିକଙ୍କ ଘରେ ଲୁଚି ରହିଲେ । ସେତେବେଳେ ବିଭୂତି ଭୂଷଣ ମଲ୍ଲିକ ବାଳକ । ତଥାପି ସେ ସଂଗ୍ରାମୀମାନଙ୍କର ବହୁତ ଯତ୍ନ ନେଇଥିଲେ ଓ ସେମାନଙ୍କ ଠାରୁ ଅଗଷ୍ଟ ବିପ୍ଳବର ଲୋମହର୍ଷଣକାରୀ କାହାଣୀମାନ ଶୁଣିଥିଲେ ।

ଶିରିଷ କୁମାର ଦେ ସେଦିନ ଖଣ୍ଟିଆଡ଼ ହାଟରୁ ପଳାଇ ଆସିବାରେ ସକ୍ଷମ ହୋଇଥିଲେ ବି ପରେ ଗୃହପାଳିତ ଗୁରୁଦାସପୁର

ମଝି ବାଟରେ ଧରା ପଡ଼ିଲେ । ବିଚାରରେ ସେ ୩ ମାସ ଜେଲଦଣ୍ଡ ଭୋଗିଲେ ।

ଅନ୍ୟତମ ପ୍ରଧାନ ବିପ୍ଳବୀ ଜଣାରାମ ଦାସ ଫତ୍ତେଆବାଦ ପ୍ରଗଣା ଭିତରେ ରହିଲେ ଗିରଫ ହେବାର ଆଶଙ୍କା ଥିବାରୁ ସୋର ପଳାଇ ଗଲେ ଓ ସୋର ଆଶ୍ରମ ଦଖଲ କରିବାରେ ଅଂଶ ଗ୍ରହଣ କଲେ । ପୁଣି ସେଠାରୁ ପଳାଇ ଯାଇ କଟକରେ ଆତ୍ମଗୋପନ କଲେ । ପରେ ଧରାପଡ଼ି ୬ ମାସ କାରାଦଣ୍ଡ ପାଇଲେ ।

ସେହିଭଳି ଅଗଷ୍ଟ ବିପ୍ଳବର ସତ୍ୟାଗ୍ରହୀ ତଥା "ସ୍ୱାଧୀନ ଫତ୍ତେଆବାଦ ପ୍ରଗଣା" ଘୋଷଣା ସମୟର ସକ୍ରିୟ କର୍ମୀ ଫଣୀଭୂଷଣ ଦାସ ଏ ଅଞ୍ଚଳରୁ ପଳାଇ ଯାଇ କଟକରେ ଥିବାବେଳେ ଗିରଫ ହୋଇ ୬ ମାସ ପାଇଁ କାରାଦଣ୍ଡ ଭୋଗିଲେ ।

କୃଷ୍ଣ ପ୍ରସାଦ ଜେନା, ଗୋବିନ୍ଦ ପ୍ରସାଦ ଗିରି, ଅବିନାଶ ବେହେରା, ଲକ୍ଷ୍ମୀ ନାରାୟଣ ଗୋସ୍ୱାମୀ, କାର୍ତ୍ତିକ ବେହେରା, ଦିବାକର ଗିରି, କ୍ଷେତ୍ରମୋହନ ଜେନା, ମାଧବାନନ୍ଦ ଦାସ ଅଧିକାରୀ, ଫକୀର ଦାସ, ଫକୀର ମୋହନ ପାତ୍ର ଓ ଆହୁରି ଅନେକଙ୍କର ତ୍ୟାଗ ଓ ସାହସ ସାଂଗଠନିକ ଦକ୍ଷତା ଓ କଷ୍ଟ ସ୍ୱୀକାରକୁ କେବେହେଲେ ଭୁଲି ହେବ ନାହିଁ ।

ସରଡିହାର ଦେବେନ୍ଦ୍ର ନାଥ ମହାନ୍ତି ୧୯୪୨ ଆନ୍ଦୋଳନ ସମୟରେ ଗୋପନରେ ବିପ୍ଳବୀମାନଙ୍କୁ ସାହାଯ୍ୟ କରୁଥିଲେ । ହରେନ୍ଦ୍ର ଘୋଷଙ୍କ ଠାରୁ ଚିଠିପତ୍ର ଆଣି ସତ୍ୟେନ୍ଦ୍ର ନାଥ ଡଗର ଓ ଗଙ୍ଗାଧର ଗିରିଙ୍କୁ ଦଉଥିଲେ ଓ ଏମାନଙ୍କ ଠାରୁ ବାର୍ତ୍ତା ନେଇ ଶ୍ରୀ ଘୋଷଙ୍କୁ ଦେଇ ଆସନ୍ତି । ସେତେବେଳକୁ ସେ ଶିକ୍ଷକତା

କରୁଥିଲେ ବି ଭୟ କରୁ ନଥିଲେ । ପୋଲିସ ଏସ: ଆଇ: ଓସମାନ ଖାଁ ଓ ଏ: ଏସ: ଆଇ: ସୀତାରାମ ଦେ ଅନେକ ବାର ତାଙ୍କୁ ଏଥିପାଇଁ ସତର୍କ କରି ଦେଇ ଥିଲେ ।

ଶାଳବଣିର ଗୋପୀନାଥ ଡଗର ଜଣେ ମାନ୍ୟ ଗଣ୍ୟ ଓ ଧନୀ ବ୍ୟକ୍ତି ଥିଲେ । ଅଗଷ୍ଟ ବିପ୍ଳବ କାଳରେ ଗୌର ଚନ୍ଦ୍ର ଦାସଙ୍କ ବିରୁଦ୍ଧରେ ଗିରଫ ପରୱାନା ଜାରି ହୋଇ ସାରିଥାଏ ଓ ତାଙ୍କୁ ଧରାଇ ଦେଲେ ଆର୍ଥିକ ପୁରସ୍କାର ଦେବା କଥା ସରକାର ଘୋଷଣା କରି ସାରିଥାନ୍ତି । ତଥାପି ସେ ନିର୍ଭୟରେ ପନ୍ଦର ଦିନ କାଳ ତାଙ୍କୁ ନିଜ ଘରେ ଆଶ୍ରୟ ଦେଇ ଥିଲେ ।

ମହୁଲଡ଼ିହାର ବିଶିଷ୍ଟ ଧନୀ ବ୍ୟକ୍ତି ଭାଗବତ ଚନ୍ଦ୍ର ମଲ୍ଲିକ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ । ବିଭିନ୍ନ ସମୟରେ ଆର୍ଥିକ ସହାୟତା କରିବା ସହିତ ସଂଗ୍ରାମୀମାନଙ୍କୁ ସାମୟିକ ଭାବରେ ସେ ଆଶ୍ରୟ ମଧ୍ୟ ଦେଇ ଥିଲେ ।

ଦେଶର ସ୍ୱାଧୀନତା ସଂଗ୍ରାମରେ ରାଇବଣିଆ ଅଞ୍ଚଳର ଆଦିବାସୀ ମାନଙ୍କର ପ୍ରଶଂସନୀୟ ଅବଦାନ ରହିଥିଲା । ସେମାନେ ନିରକ୍ଷର, ଦରିଦ୍ର, କୁସଂସ୍କାରଗ୍ରସ୍ତ ମାତ୍ର ସରଳ ଥିଲେ । ମୂଲ ମଜୁରି ଲାଗି ଏବଂ ଜଙ୍ଗଲଜାତ ଦ୍ରବ୍ୟର ବ୍ୟବହାର ଓ ବିକ୍ରି କରି ପେଟ ପୋଷୁ ଥିଲେ । ସେମାନଙ୍କର ସରଳତାର ସୁଯୋଗ ନେଇ ମହାଜନ ଓ ଜମିଦାରମାନେ ସେମାନଙ୍କୁ ନାନା ଭାବରେ ଶୋଷଣ କରୁଥିଲେ । ମାତ୍ର କାହାରି ପ୍ରତି ସନ୍ଦେହ ଜାତ ହେଲେ ଓ ଆବଶ୍ୟକ ସ୍ଥଳେ ସେମାନେ ହିଂସ୍ର ପାଲଟି ଯାଆନ୍ତି ଓ ଶତ୍ରୁର ପ୍ରାଣ ନାଶ କରିବାକୁ ଦ୍ୱିଧା କରନ୍ତି ନାହିଁ ।

କିନ୍ତୁ ଆଶ୍ଚର୍ଯ୍ୟର କଥା ସ୍ୱାଧୀନତା ଆନ୍ଦୋଳନ ସମୟରେ ସେମାନେ ଗାନ୍ଧିଜୀଙ୍କର ଅହିଂସା ମାର୍ଗକୁ ପୂର୍ଣ୍ଣରୂପେ ଗ୍ରହଣ କରି ନେଇ ଥିଲେ । ଏ ଅଞ୍ଚଳର ଆଦିବାସୀମାନଙ୍କର ମୁଖ୍ୟତଃ ତିନି ଜଣ ନେତାଙ୍କ ମଧ୍ୟରୁ ଗୁଣ୍ଡିରିଶୋଳର ରଖାଲ ଚନ୍ଦ୍ର ସିଂ ସାମାନ୍ୟ ଶିକ୍ଷା ଲାଭ କରିଥିଲେ । ଅନ୍ୟ ଦୁଇ ଜଣ ନମଡିହାର କୈଳାସ ସିଂ ଓ ଲୁହାପଡ଼ାର କୁଆଁରିଆ ସାନ୍ତାଳ ନିରକ୍ଷର ଥିଲେ । ସେମାନେ ନିଜେ ଆଦିବାସୀମାନଙ୍କର ପ୍ରିୟ ନିଶା ମଦ ଓ ହାଣ୍ଡିଆର ବ୍ୟବହାର ପରିତ୍ୟାଗ କରି ଅନ୍ୟ ମାନଙ୍କୁ ମଧ୍ୟ ସେ ସବୁର କୁଫଳ ବୁଝାଉ ଥିଲେ । ତିନି ଜଣ ଯାକ ପୋଲିସର କାଠି ମାଡ଼ ଖାଇ ଅକର୍ମଣ୍ୟ ହୋଇ ଯାଇଥିଲେ । ଅଶେଷ ଲାଞ୍ଛନା ସହ୍ୟ କରିଥିଲେ । ତଥାପି ସେମାନେ ଓ ସେମାନଙ୍କର ଅନୁଗତମାନେ ଧୈର୍ଯ୍ୟ ହରାଇ ନାହାନ୍ତି କିମ୍ବା ହିଂସାର ଆଶ୍ରୟ ନେଇ ନାହାନ୍ତି ।

ଆଦିବାସମାନଙ୍କର ସକ୍ରିୟ ସହଯୋଗ ଯୋଗୁଁ ପଞ୍ଚଆବାଦ ପ୍ରଗଣାରେ ୧୯୪୨ ମସିହାର "ଭାରତ ଛାଡ଼" ଆନ୍ଦୋଳନ ଏକ ଗଣ ଆନ୍ଦୋଳନରେ ପରିଣତ ହୋଇ ପାରିଥିଲା ।



# ଚେଖ ଉପରେ ନଳିତା ବିଡ଼ା

## ସବୁ ଦିନ ସମାନ ଯାଏନାହିଁ

୧୯୪୨ ଅଗଷ୍ଟ ସେପ୍ଟେମ୍ବର ଘନଘଟା ମଧ୍ୟରେ ସମଗ୍ର ଉତ୍ତର ବାଲେଶ୍ୱରରେ ପ୍ରଳୟଙ୍କରୀ ତୋଫାନ ଓ ବର୍ଷା ହୋଇ ଧନ ଓ ଜନ ଜୀବନକୁ ନଷ୍ଟ ଭ୍ରଷ୍ଟ କରି ଦେଲା ।

ସେଦିନ ଥାଏ ୧୯୪୨ ମସିହାର ଅକ୍ଟୋବର ୧୬ ତାରିଖ । ଦୁର୍ଗା ପୂଜାର ସପ୍ତମୀ ତିଥି । ଗୃହଆଡ଼େ ଆନନ୍ଦର ଜୁଆର ଖେଳି ଯାଉଛି । ଏ ଅଞ୍ଚଳରେ ଲକ୍ଷ୍ମଣନାଥ ଜମିଦାରଙ୍କର ଦୁର୍ଗା ପୂଜାର ଖ୍ୟାତି ବହୁତ । ରାଇବଣିଆର ଜମିଦାର ଓ ଜଳେଶ୍ୱରର ବାସିନ୍ଦାମାନେ ମଧ୍ୟ ନିଜ ନିଜ ଜାଗାରେ ଆଡ଼ମ୍ବର ସହକାରେ ଦୁର୍ଗା ପୂଜା କରନ୍ତି । ଲୋକେ ବ୍ୟସ୍ତ, କିଭଳି ଭାବରେ ଅଷ୍ଟମୀ, ନବମୀ ଓ ଦଶହରା ଉତ୍ସବକୁ ଆନନ୍ଦରେ ଉପଭୋଗ କରିବେ ।

ମାତ୍ର ଏତେ ଆନନ୍ଦ ସେମାନଙ୍କ ଭାଗ୍ୟରେ ନ ଥିଲା । ସପ୍ତମୀ ଦିନ ସକାଳ ଠାରୁ ବର୍ଷା— ତାପରେ ପବନ ବୋହିବା ଆରମ୍ଭ ହେଲା । କ୍ରମେ ତାହା ଝଡ଼ ତୋଫାନର ଆକାର ଧାରଣ କଲା । ପ୍ରାୟ ଅର୍ଦ୍ଧରାତ୍ରି ଯାଏ ପ୍ରକୃତିର ଏ ତାଣ୍ଡବ ଲୀଳା ଚାଲିଥାଏ । ପ୍ରକୃତିରାଣୀ ସତେ ଯେପରି ଧ୍ୱଂସର ଅବତାର ନେଇ ଆସିଥାନ୍ତି । ମଣିଷ ଓ ପଶୁ ପକ୍ଷୀଙ୍କର ଆର୍ତ୍ତ ଚିତ୍କାର ବିଲୀନ ହୋଇଗଲା ପ୍ରଳୟଙ୍କରୀ ବର୍ଷା ଓ ଝଡ଼ ତୋଫାନର ଭୟଙ୍କର ଶବ୍ଦରେ । ଲୋକେ କହନ୍ତି— ପାହାନ୍ତା ପ୍ରହରକୁ ବଂଶୀର ଏକ ମଧୁର ଧ୍ୱନି ଶୁଣାଗଲା । ତା ପରେ ଝଡ଼ ବର୍ଷା ଆସ୍ତେ ଆସ୍ତେ କମିଗଲା । କାଳରାତ୍ରି ପାହି ଯାଇ ସକାଳ ହେଲା ।

ଗଛ ସବୁ ଉପୁଡ଼ି ପଡ଼ୁଥାଏ । ରାସ୍ତା ଅବରୁଦ୍ଧ । ଘରଦ୍ୱାର ଭାଙ୍ଗି ଯାଇଥାଏ । ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ୫ଫୁଟ ଉଚ୍ଚର ଜୁଆର ମାଡ଼ି ଆସିବା ଫଳରେ ବିସ୍ତୀର୍ଣ୍ଣ ଅଞ୍ଚଳରେ ଘରଦ୍ୱାରର ଚିହ୍ନବର୍ଣ୍ଣ ମଧ୍ୟ ନ ଥାଏ । ପଶୁ, ପକ୍ଷୀ ଓ ମଣିଷ ଅନେକ ମରିଥାନ୍ତି । ଧନୀ ଗରିବ ନିର୍ବିଶେଷରେ ସମସ୍ତେ ଅନାଥ ହୋଇ ଯାଇଥାନ୍ତି । ଧାନ ଫସଲ ପାଣିରେ ବୁଡ଼ି ଯାଇଛି, ପାନ ବରଜ ନଷ୍ଟ ହୋଇ ଯାଇଛି । ନଡ଼ିଆ ଗଛ ସବୁ ଭାଙ୍ଗି ଯାଇଛି । ବସ୍ତା, ବାଲିଆପାଳ, ଭୋଗରାଇ, ଜଳେଶ୍ୱର ଓ ରାଇବଣିଆ ଅଞ୍ଚଳ ତଥା ଉତ୍ତରକୁ ମେଦିନୀପୁର କାନ୍ଥିର ବିସ୍ତୀର୍ଣ୍ଣ ଅଞ୍ଚଳ ଏ ଧ୍ୱଂସକାରୀ ଝଡ଼ ତୋଫାନର ଶିକାର ହୋଇଥାଏ ।

ଲକ୍ଷ୍ମଣନାଥ ରୋଡ଼ ଷ୍ଟେସନ ପାଖରେ ଥିବା ମହାମାୟା ଚାଉଳ କଳର ଛପର ଉଡ଼ି ଯାଇଥାଏ ଓ ପାଚେରୀ ମଧ୍ୟ ଭାଙ୍ଗି ଯାଇଥାଏ । ଚାଉଳ ବସ୍ତା ସବୁ ବର୍ଷାରେ ଭିଜିଯାଇ ଫାଟି ଯାଇଥାଏ ଓ ଚାଉଳ ବିଛୁଡ଼ି ହୋଇ ପଡ଼ିଥାଏ । ଏ ଖବର ପ୍ରଚାରିତ ହୋଇ ଯିବାରୁ ଭୋକିଲା ଲୋକେ ଦଶହରା ଦିନ ହଜାର ହଜାର ସଂଖ୍ୟାରେ ଜଳେଶ୍ୱର ରାଇବଣିଆ ଓ ପଡ଼ୋଶୀ ବଙ୍ଗଳାରୁ ଆସି ମିଲ ଭିତରକୁ ପଶିଗଲେ । ଭୋକ ଦାଉରେ ସେଇ ଭିଜା ଚାଉଳରୁ ପ୍ରତ୍ୟେକେ କିଛି କିଛି ଖାଇଲେ ଓ ଆଉ କିଛି ଚାଉଳ ନିଜର ଲୁଗା କାନିରେ ବାନ୍ଧି ନେଇ ଯିବାକୁ ଲାଗିଲେ । କଂଗ୍ରେସ ନେତା ଅଟଳ ବିହାରୀ ମହାନ୍ତି, ସୁରେନ୍ଦ୍ର ଘୋଷ, ଗୋବିନ୍ଦ ଗିରି ଓ ଅବିନାଶ ବେହେରା ପ୍ରଭୃତି ଲୋକଙ୍କୁ ବୁଝାଇ ସେଥିରୁ ନିବୃତ୍ତ କରାଇବାରେ ଲାଗିଲେ । ସୁନାକଣିଆର ଡାକ୍ତର ଚୈତନ୍ୟ ନାଥ ବେହେରା ଓ ଲକ୍ଷ୍ମଣନାଥର ମେଲେରିଆ ଇନସ୍ପେକ୍ଟର ପଦ୍ମଲୋଚନ ଖଟୁଆଙ୍କୁ ମଧ୍ୟ ଅଟଳ ବାବୁ ଡକାଇ

ଆଣିଲେ । ଯେମିତି କରୁ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ନ ହୁଏ, ସେ ଦିଗରେ ସେମାନେ ଯତ୍ନଶୀଳ ହେଲେ । ମାତ୍ର ମିଲର ମାଲିକ ପୋଲିସ ମଗାଇଲେ । ଗୁଳି ନ ଚଳାଇବାକୁ ନେତାମାନେ ଯେତେ ଅନୁରୋଧ କଲେ ମଧ୍ୟ ମିଲଟାଣ୍ଟ ପୋଲିସ ଗୁଳି ଚଳାଇଲେ । ଫଳରେ ସଦନ ଜେନାଙ୍କର ଘଟଣା ସ୍ଥଳରେ ମୃତ୍ୟୁ ହେଲା । ଲକ୍ଷ୍ମଣନାଥର ଥପ ସାନ୍ୟାଲର ବାହୁରେ ଗୁଳି ବାଜିଲା । ଆଉ କେତେକ ମଧ୍ୟ ଆହତ ହେଲେ । ଲୋକେ ପ୍ରାଣ ବିକଳରେ ପଳାଇ ଗଲେ । ଲୋକଙ୍କୁ ମତାଇ ମିଲରୁ ଚାଉଳ ଲୁଟ୍ ପାଟ୍ କରାଇଥିବା ଅଭିଯୋଗରେ ପୋଲିସ କଂଗ୍ରେସ ନେତା ଅଟଳ ବିହାରୀ ମହାନ୍ତି ଓ ହରେନ୍ଦ୍ର ଘୋଷ ପ୍ରଭୃତିଙ୍କୁ ଗିରଫ କରି ମୋକଦ୍ଦମା ରୁଜୁ କଲା । ଦୀର୍ଘଦିନ ବିଚାର ଚାଲିବା ପରେ ପ୍ରମାଣ ଅଭାବରୁ ସେମାନେ ନିର୍ଦ୍ଦୋଷରେ ଖଲାସ ହେଲେ ।

ସରକାରୀ କଳ ସମ୍ପୂର୍ଣ୍ଣ ବିଭ୍ରାନ୍ତ ଓ ନିଷ୍କ୍ରିୟ । ତୋଫାନ ପରେ ଉଦ୍ଧାର ଓ ଥଇଥାନ କାମ କରୁ ହେଉ ନଥାଏ । ଅଗଷ୍ଟ ବିପ୍ଳବ ଓ ଦ୍ୱିତୀୟ ମହାଯୁଦ୍ଧ ପାଇଁ ସମସ୍ତ ସରକାରୀ କଳ ବ୍ୟସ୍ତ । ଲୋକଙ୍କ ଦୁଃଖ ବୁଝିବା ପାଇଁ ସେମାନଙ୍କର ସମୟ କାହିଁ ? କେବଳ ଜେଲ ବାହାରେ ଥିବା କଂଗ୍ରେସର ସାଧାରଣ କର୍ମୀ, କେତେକ ସହୃଦୟ ମହାନ ବ୍ୟକ୍ତି ଓ ସ୍ୱେଚ୍ଛାସେବୀ ସଂଗଠନ ଗୁଡ଼ିକ ଦେବଦୂତ ଭଳି ଆଗେଇ ଆସି ସେମାନଙ୍କର ସାହା ଭରସା ହେଲେ ।

ଭାରତର ଜନ ସାଧାରଣଙ୍କର ମତ ନ ନେଇ ଦ୍ୱିତୀୟ ମହାଯୁଦ୍ଧରେ ଭାରତ ଯୋଗଦେଲା ବୋଲି ଇଂରେଜ ସରକାର ଘୋଷଣା କରିଥିଲେ । ତାହାର ପ୍ରତିବାଦରେ ବିଭିନ୍ନ ପ୍ରଦେଶରେ ଥିବା ଲୋକପ୍ରିୟ କଂଗ୍ରେସ ମନ୍ତ୍ରୀ ମଣ୍ଡଳ ଭଳି ଓଡ଼ିଶାରେ ମଧ୍ୟ ବିଶ୍ୱନାଥ ଦାସଙ୍କ ମନ୍ତ୍ରୀ ମଣ୍ଡଳ ୧୯୩୯ ମସିହା ନଭେମ୍ବର ୪ ତାରିଖରେ

ଇସ୍ତଫା ଦେଇଥିଲେ । ବ୍ୟକ୍ତିଗତ ସତ୍ୟାଗ୍ରହ କରି କଂଗ୍ରେସ ଲୋକେ ୧୯୪୧ ମସିହା ଡିସେମ୍ବର ମାସରେ କାରାବରଣ କଲେ । ଏତିକି ବେଳେ ଅର୍ଥାତ୍ ୧୯୪୧ ମସିହା ନଭେମ୍ବର ୨° ତାରିଖରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ନେତୃତ୍ୱରେ ଏକ ସଖୀ କର୍ଣ୍ଣେଇ ମିଳିତ ସରକାର ଇଂରେଜଙ୍କ ସହାୟତା ରେ ଗଢ଼ା ଯାଇଥିଲା । ଲୋକଙ୍କର ଅଭାବ ଅସୁବିଧା, ଆପଦ, ବିପଦ କଥା ବୁଝିବା ଅପେକ୍ଷା ସେ ସରକାର ଇଂରେଜ ସରକାର ତୁଷ୍ଟି ସାଧନାରେ ଓ ଯୁଦ୍ଧ କାର୍ଯ୍ୟରେ ସହାୟତା କରିବାରେ ବ୍ୟସ୍ତ ଥିଲା ।

ଆଗରୁ ମୁଖ୍ୟତଃ ବର୍ମାରୁ ଧାନ ଓ ଚାଉଳ ଆମଦାନୀ କରା ଯାଉଥାଏ । ମାତ୍ର ବର୍ମା ଜାପାନର ଅଧିକାରଭୁକ୍ତ ହେବା ପରେ ତା ସହିତ ବାଣିଜ୍ୟ କାରବାର ବନ୍ଦ ହୋଇଗଲା । ଯୁଦ୍ଧ ସମୟରେ କଲିକତାରେ ଇଂରେଜ ଓ ମିତ୍ର ପକ୍ଷର ହଜାର ହଜାର ସୈନ୍ୟ ରହିଥାନ୍ତି । ସେମାନଙ୍କର ଖାଦ୍ୟାଭାବ ମେଣ୍ଟାଇବା ପାଇଁ ଭାରତର ବିଭିନ୍ନ ସ୍ଥାନରୁ ବିଶେଷତଃ ପଡ଼ୋଶୀ ଓଡ଼ିଶାରୁ ଧାନ, ଚାଉଳ ଆମଦାନୀ କରା ଯାଉଥାଏ । ଓଡ଼ିଶାର ଅଭାବ, ଅସୁବିଧା କଥା ବା ବୁଝୁଛି କିଏ ?

ପୁନଶ୍ଚ ଓଡ଼ିଶାର ମିଳିତ ସରକାର ଠିକ୍ ସେତିକିବେଳେ ବଙ୍ଗଳାର 'ଇସ୍ପାହାନୀ କମ୍ପାନୀ' ନାମକ ଏକ ବ୍ୟବସାୟୀ ସଂସ୍ଥା ସହିତ ରାଜିନାମା କରି ବଙ୍ଗଳାକୁ ଧାନ, ଚାଉଳ ରପ୍ତାନୀ କଲେ, ଓଡ଼ିଶାର ଲୋକମାନେ ଦ୍ରୁତ ଗତିରେ ମୃତ୍ୟୁ ମୁଖକୁ ଆଗେଇ ଚାଲିଥାନ୍ତି । କଂଗ୍ରେସ କର୍ମୀ ଓ ସାଧାରଣ ଲୋକମାନେ ଏକ ଭୟାବହ ଭବିଷ୍ୟତର ଯେଉଁ ଛବି ଦେଉଥାନ୍ତି, ତାହା କୌଣସି ସରକାରୀ କର୍ମଚାରୀ ଦେଖୁ ନଥାନ୍ତି କି ସେମାନଙ୍କ କଥା କେହି ଶୁଣୁ ନଥାନ୍ତି ।

ଯୁଦ୍ଧ ଯୋଗୁଁ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ପତ୍ରର ଦର ଦାମ ହୁ ହୁ ବଢ଼ି ଚାଲିଥାଏ । ଧାନ ଚାଉଳର ଦାମ ସର୍ବାଧିକ ହାରରେ ବଢ଼ୁଥାଏ । ମାତ୍ର ଓଡ଼ିଶାର ଲୋକଙ୍କ ପାଖରେ କିଣି ଖାଇବା ଭଳି ସାମର୍ଥ୍ୟ ହିଁ ନଥିଲା । ଭାଗ୍ୟ ଓ ଭଗବାନଙ୍କ ଉପରେ ସେମାନେ ନିର୍ଭର କରି ରହିଲେ ।

୧୯୪୩ ମସିହା ଆରମ୍ଭରୁ ଉତ୍ତର ବାଲେଶ୍ୱର ତଥା ପଶ୍ଚିମ ବଙ୍ଗରେ ଖାଦ୍ୟର ଦାରୁଣ ଅଭାବ ଦେଖା ଦେଇଥିଲା । ଦୁର୍ଭିକ୍ଷର କରାଳ ମୁଖ ଏ ଅଞ୍ଚଳକୁ ଗ୍ରାସ କରିବାରେ ଲାଗିଥାଏ । ଅନ୍ୟ ସବୁ ଦାଉ ସମ୍ଭାଳି ହେବ କିନ୍ତୁ ଭୋକର ଦାଉକୁ କେବେ ନୁହେଁ । ସ୍ତ୍ରୀ, ପୁରୁଷ, ବାଳକ, ବାଳିକା ନିର୍ବିଶେଷରେ ସମସ୍ତେ ଅସ୍ଥି କଙ୍କାଳ ସାର ହୋଇଗଲେ । ପୁରୁଣା ଲୋକେ ନଅଙ୍କ ଦୁର୍ଭିକ୍ଷର ସ୍ମୃତି ସ୍ମରଣ କରୁଥାନ୍ତି ।

ଅନେକ ଅବସ୍ଥାପନ୍ନ ଲୋକ ମଧ୍ୟ ଭିକାରୀ ସାଜିଲେ । ମୁଠାଏ ଭାତ ବା ମୁଢ଼ି, ମୁନ୍ଦାଏ ପେଜ, କିମ୍ବା କୁଣ୍ଡା ପାଇଁ ପ୍ରତି ଦୁଆର ମୁହଁରେ କରୁଣ, ଆକୁଳ ଚିତ୍କାର ଦିନସାରା ଲାଗି ରହିଲା । ମାତ୍ର ଭିକ ଦେବାଭଳି ସାମର୍ଥ୍ୟ ବା କାହାର ଥିଲା ? ଭିକ ମାଗିବାକୁ ବା କାମଧନ୍ଦା ପାଇଁ ଦୂର ଯାଗାକୁ ଯାଇ ନପାରି ଅନେକ ସ୍ତ୍ରୀ, ପୁରୁଷ ଆତ୍ମହତ୍ୟା ମଧ୍ୟ କଲେ । ଓଲୁଅ, ତେନ୍ତୁଳି ପତ୍ର, ଆତ ପତ୍ର, କଞ୍ଚା ଧାନ ଓ ଘାସ ମଧ୍ୟ ଲୋକେ ଭୋକ ଦାଉରେ ଖାଇଗଲେ । ଅନାହାରରେ ତ ଲୋକେ ମଲେ । ପୁଣି ଅଖାଦ୍ୟ ଖାଇ ମଧ୍ୟ ଅନେକ ମଲେ । ବଙ୍ଗଳାରୁ ହଜାର ହଜାର ଲୋକ ଖାଦ୍ୟର ସନ୍ଧାନରେ ଓଡ଼ିଶାକୁ ଚାଲି ଆସିଲେ । ଅବସ୍ଥା ଭୟଙ୍କର ହୋଇ ଉଠିଲା । ଜଳେଶ୍ୱର, ରାଇବଣିଆ, ଭୋଗରାଇ, ବସ୍ତା, ବାଲିଆପାଳ ଓ

ବାଲେଶ୍ୱର ସଦର ଅଞ୍ଚଳର ଲୋକେ ଘରେ, ବାହାରେ, ରାସ୍ତା କଡ଼ରେ ପୋକ ମାଛି ପରି ଟଳି ପଡ଼ିଲେ । ହଇଜା, ବସନ୍ତର ପ୍ରାଦୁର୍ଭାବ ବଢ଼ି ଚାଲିଲା । ଏ ଦୁର୍ଭିକ୍ଷରେ ଓଡ଼ିଶା ଓ ବଙ୍ଗଳାର ପ୍ରାୟ ୫୦ ଲକ୍ଷ ଲୋକ ମରିଥିବାର ହିସାବ କରାଯାଇଥିଲା ।

ଓଡ଼ିଶା ବିଧାନ ସଭାରେ କଂଗ୍ରେସ ଦଳର ଉପ - ଦଳପତି ଶ୍ରୀ ନିତ୍ୟାନନ୍ଦ ଦାସ ଓ ଶ୍ରୀମତି ସରଳା ଦେବୀ ସରକାରଙ୍କ ଚରମ ନିଷ୍ଠୁରତା ଓ ନିସ୍ପୃହତାର ତୀବ୍ର ନିନ୍ଦା କଲେ ।

୧୯୪୩ ମସିହା ଏପ୍ରିଲ ୧୮ ତାରିଖରେ ଭୋଗରାଇର ତତ୍କାଳୀନ ତରୁଣ ବିପ୍ଳବୀ ଦୁର୍ଗାଦାସଙ୍କ ନେତୃତ୍ୱରେ ଭୋଗରାଇ, ବାଲିଆପାଳ, ଜଳେଶ୍ୱର, ରାଇବଣିଆ ଓ ବସ୍ତା ଅଞ୍ଚଳର ୧୮ ହଜାର ଭୋକିଲା ଲୋକଙ୍କର ଏକ ପଟୁଆର (Hunger March) ବାଲେଶ୍ୱର ସହରକୁ ଚାଲିଲା । ଉଦ୍ଦେଶ୍ୟ ଥିଲା— ଜିଲା କଲେକ୍ଟରଙ୍କ ପାଖରେ ନିଜର ଦୁରବସ୍ଥାର ପ୍ରମାଣ ଦେବା ଓ ପ୍ରତିକାର ଦାବୀ ଉପସ୍ଥାପନ କରିବା । ସରକାର ଡରିଗଲେ । ସରକାରୀ କର୍ମଚାରୀ ଓ ସମର୍ଥକମାନେ ଏ ଭୋକିଲା ପଟୁଆରକୁ ବାଲେଶ୍ୱର ସହର ଉପକଣ୍ଠରେ ଅଟକାଇବାର ବହୁତ ଚେଷ୍ଟା କରିଥିଲେ । ମାତ୍ର ଫଳ କିଛି ହୋଇ ନ ଥିଲା । ସେମାନେ ସହର ଭିତରକୁ ପ୍ରବେଶ କଲା ବେଳକୁ ଗୁଜଆରେ ବ୍ୟବସାୟୀମାନେ ଦୋକାନ ପତ୍ର ବନ୍ଦ କରି ଦେଲେ ।

ଜିଲା କଲେକ୍ଟର ଶ୍ରୀ ଡି: ରାମନାଥନ୍ ଲୋକଙ୍କ ଚେହେରା ଦେଖି ସ୍ତମ୍ଭୀଭୂତ ହୋଇଗଲେ । ଅବସ୍ଥା ଏତେ ଖରାପ ବୋଲି ସେ ଧାରଣା କରି ନ ଥିଲେ । ତାଙ୍କ ହୃଦୟରେ କରୁଣା ଓ ଦୟା ଭାବର ସଞ୍ଚାର ହେଲା । ଉତ୍ତର ଓଡ଼ିଶାକୁ ଶୀଘ୍ର ମରୁଡ଼ି ଅଞ୍ଚଳ ଘୋଷଣା କରି

ଦୁର୍ଭିକ୍ଷର ପ୍ରତିକାର କରିବାକୁ ସେ ସରକାରଙ୍କୁ ଫୋନ୍ କଲେ । ମାତ୍ର ସରକାର ତାଙ୍କ ଉପରେ କ୍ଷୁବ୍ଧ ଓ ବିରକ୍ତ ହୋଇ ତାଙ୍କୁ କଲପାକ ପଦବୀରୁ ଅବ୍ୟାହତ ଦେଇ ୬ମାସ ପାଇଁ ବାଧ୍ୟତାମୂଳକ ଭାବରେ ଛୁଟିରେ ପଠାଇ ଦେଲେ । ଅବସର ପ୍ରାପ୍ତ କଲେକ୍ଟର ରାୟବାହାଦୁର ଶ୍ରୀ ମନ୍ମଥ ନାଥ ବୋଷ (ଘର ଭୋଗରାଇର କଖଡ଼ା) କଲେକ୍ଟରଙ୍କ ଦାୟିତ୍ୱରେ ଅବସ୍ଥାପିତ ହେଲେ ।

ଭୋକଲା ଲୋକଙ୍କ ସ୍ଲୋଗାନ କାମଦିଅ, ଭାତଦିଅ, 'ଇନ୍‌କଲାବ-ଜିନ୍ଦାବାଦ' ଧ୍ୱନିରେ ସମଗ୍ର ବାଲେଶ୍ୱର ସହର କମ୍ପି ଉଠିଲା । ତାର ପ୍ରତିଧ୍ୱନି ଶୁଭିଲା ଜେଲଖାନାରେ ବନ୍ଦୀ କଂଗ୍ରେସ କର୍ମୀମାନଙ୍କର ମିଳିତ କଣ୍ଠରୁ । ଦୁଇଦିନ କାଳ ଭୋକଲା ଲୋକେ ସହରରେ ରହିଲେ । ଅନେକ ବଦାନ୍ୟ ସହାନୁଭୂତିଶୀଳ ଲୋକ ଯଥା— ସାମନ୍ତ ରାଧାପ୍ରସନ୍ନ ହୋତା ଓ ରାଜା ମନ୍ମଥ ନାଥ ଦେବ ତଥା ବୁଦ୍ଧିଜୀବି ଓ ବ୍ୟବସାୟୀ ଗୋଷ୍ଠୀ ସେମାନଙ୍କ ପାଇଁ ଖାଇବାର ଯଥା ସମ୍ଭବ ବ୍ୟବସ୍ଥା କଲେ ।

ଭୋକଲା ପଲ୍‌ଟନ ପରେ ବିପ୍ଳବୀ ଦୁର୍ଗା ଦାସ ଓ ଅନ୍ୟମାନେ ସେଇ ବାଲେଶ୍ୱରରେ ଆତ୍ମଗୋପନ କରିଗଲେ । ସରକାର ସେମାନଙ୍କୁ ଧରି ପାରିଲେ ନାହିଁ । କିନ୍ତୁ ସେ ଚୁପ୍ ହୋଇ ବସି ନ ଥିଲେ । ଗାଁକୁ ଗାଁ ଘୂରି ବୁଲିଲେ । ଲୋକଙ୍କର ଏ ଦୁର୍ଦ୍ଦିନରେ ବି ଧାନ ମହାଜନମାନେ ସରକାରୀ ଦରରେ ଧାନ ବିକ୍ରି ନକରି ବା କରଜ ନ ଦେଇ ଅଧିକ ଦରରେ ବାହାରର ବେପାରୀଙ୍କୁ ବିକ୍ରି କରି ଦେଉଥିଲେ । ଦୁର୍ଗା ଦାସ ଭୋକଲା ଲୋକମାନଙ୍କୁ ନେଇ ଜଳେଶ୍ୱର ଓ ଭୋଗରାଇର ସେଇଭଳି ଅନେକ ଧନୀ ଲୋକଙ୍କର ଧାନ ଅମାର ସବୁ ଲୁଟ୍ କରି ଭୋକଲା ଓ ଅଭାବଗ୍ରସ୍ତ ଲୋକଙ୍କ ଭିତରେ ବାଣ୍ଟି ଦେଉଥିଲେ ।

ଜମାଳପୁରର ବିଶ୍ୱନାଥ ପଣ୍ଡାଙ୍କ ଭଳି କେତେକ ଉଚ୍ଚମନା ଜମିଦାର ଓ ମହାଜନ ପ୍ରତିଦିନ ଶହ ଶହ ଲୋକଙ୍କୁ ମାଗଣାରେ ଖାଇବାକୁ ଦେଉଥିଲେ । ଦର ଅଧିକ ହେଲେବି ସେମାନେ ଧାନ ବିକ୍ରି କରୁ ନ ଥିଲେ । ଜେଲରୁ ଖଲାସ ହେବାପରେ କେତେକ ବଦାନ୍ୟ ବ୍ୟକ୍ତିଙ୍କ ଠାରୁ ଧାନ, ଚୁଡ଼ା ସଂଗ୍ରହ କରି ଗୋବିନ୍ଦ ଚନ୍ଦ୍ର ପାତ୍ରୀ ଓ ଯଦୁନାଥ ବାରିକ ପ୍ରଭୃତି କଳମା ଗାଁରେ, ଜଗନ୍ନାଥ ଦାସ ଅଧିକାରୀ ଓ ଯଦୁନାଥ ଜାସ୍ତ ବରଡିହା ଗଡଠାରେ, କାଶୀରାମ ଦାସ ଓ ସତ୍ୟେନ୍ଦ୍ର ନାଥ ଉଗର ପ୍ରଭୃତି କୁମୁଟିଆ ଠାରେ ତଥା ଗଙ୍ଗାଧର ଗିରି ପ୍ରସାଦଚଣ୍ଡଶାଳ ଗାଁରେ ମାଗଣା ଭୋଜନ କେନ୍ଦ୍ର ଖୋଲି ଭୋକିଲା ଲୋକଙ୍କୁ ଖାଦ୍ୟ ଯୋଗାଇଲେ ।

ସରକାର ଉତ୍ତର ବାଲେଶ୍ୱରକୁ ଦୁର୍ଭିକ୍ଷ ଅଞ୍ଚଳ ଘୋଷଣା କଲେ ନାହିଁ । ମାତ୍ର ଏହାପରେ କେବଳ ଭୋଗରାଇ ଥାନାରେ ଦୁର୍ଭିକ୍ଷ ପ୍ରତିକାରର କେତେକ ପଦକ୍ଷେପ ନିଆଗଲା । ମାଗଣା ଭୋଜନ କେନ୍ଦ୍ର ଓ ସରକାରୀ ଚୁଡ଼ା ଦୋକାନ ଖୋଲିବା ସଙ୍ଗେ ସଙ୍ଗେ ଲୋକଙ୍କୁ କାମ ଧନ୍ଦା ଯୋଗାଇ ଦିଆଗଲା । ପୁଣି ଖଜଣା ରିହାତିର ବନ୍ଦୋବସ୍ତ ହେଲା । ବୋଧହୁଏ ଏସବୁ ସମ୍ଭବ ହେଲା ନୂଆ କଲେକ୍ଟର ଭୋଗରାଇ ଅଞ୍ଚଳର ବାସିନ୍ଦା ହୋଇଥିବା ଯୋଗୁଁ । ମାତ୍ର ରାଇବଣିଆ, ଜଳେଶ୍ୱର ଓ ବାଲିଆପାଳ ଇଲାକାର ଦୁଃଖ କହିଲେ ନ ସରେ । କେବଳ କେତେକ ଶସ୍ତା ଚୁଡ଼ା ଦୋକାନ ଖୋଲିଦେଇ ସରକାର ସନ୍ତୁଷ୍ଟ ରହିଲେ । କିଣି ଖାଇବାର ଶକ୍ତି ବଢ଼ାଇବା ଦିଗରେ ଆଉକିଛି ପଦକ୍ଷେପ ସରକାର ନେଲେ ନାହିଁ । କିଣିବା ଭଳି ସାମର୍ଥ୍ୟ କେତେଜଣଙ୍କର-ବା ଥିଲା ? ଅଧିକାଂଶ ଗାଁର ଧାନ ମହାଜନମାନେ ସେମାନଙ୍କ ଗଚ୍ଛିତ ଧାନ ଅଧିକ ଦରରେ

ବ୍ୟବସାୟୀ ଓ ବାହାରର ଲୋକଙ୍କୁ ବିକ୍ରି କରି ଦେଉଥିଲେ ; ସରକାର ସେମାନଙ୍କର ଧାନ ସିଜ୍ କରି ନିର୍ଦ୍ଧାରିତ ଦରରେ ବିକ୍ରିର ବନ୍ଦୋବସ୍ତ କଲା ବେଳକୁ ବହୁତ ଡେରି ହୋଇ ଯାଇଥିଲା । ମହାଜନ ମାନଙ୍କ ଭିତରୁ ଅନେକ ସେମାନଙ୍କର ଧାନ ଅମାର ଖାଲି କରି ଦେଇଥିଲେ—ଅଧିକ ଦରରେ ବିକ୍ରି କରିଦେଇ ହେଉ ବା ନିଜର ବନ୍ଧୁ, ବାନ୍ଧବ ଘରକୁ ପଠାଇ ଦେଇ ହେଉ ।

୧୯୪୩ ମସିହା ଅକ୍ଟୋବର-ନଭେମ୍ବର ମାସରେ ସୁବର୍ଣ୍ଣରେଖା ଓ ଏ ଅଞ୍ଚଳର ଅନ୍ୟାନ୍ୟ ନଦୀମାନଙ୍କରେ ପ୍ରଳୟଙ୍କରୀ ବନ୍ୟା ଆସିବାରୁ ଭୋଗରାଇର 'ଭୂଆବନ୍ଧ' ଭାଙ୍ଗିଗଲା । ବନ୍ୟାରେ ପଞ୍ଚଆବାଦ ପ୍ରଗଣାର ବିସ୍ତୀର୍ଣ୍ଣ ଅଞ୍ଚଳ ଜଳମଗ୍ନ ହୋଇଗଲା । ହଜାର ହଜାର ଲୋକେ ଗୃହଶୂନ୍ୟ ଓ ଅନାଥ ହେଲେ । ସେ ବର୍ଷର ଫସଲ ମଧ୍ୟ ପୂରା ପୂରି ଧୋଇଗଲା । କ୍ରମାନ୍ୱୟରେ ଦୁଇ ବର୍ଷର ଫସଲ ବାତ୍ୟା ଓ ବନ୍ୟାରେ ସମ୍ପୂର୍ଣ୍ଣ ବିନଷ୍ଟ ହୋଇଯିବାରୁ ଦୁର୍ଭିକ୍ଷ ପରିସ୍ଥିତି ଆହୁରି ଗମ୍ଭୀର ହୋଇ ଉଠିଲା । ହାୟରେ ପ୍ରକୃତିର ନିଷ୍ଠୁରତା !

ସେହି ଦୁର୍ଦ୍ଦିନରେ ବେସରକାରୀ ସଂସ୍ଥା ଓ ସ୍ୱେଚ୍ଛାସେବୀ ସଂଗଠନ ମାନଙ୍କର ସାହାଯ୍ୟ ଅବଶ୍ୟ ପ୍ରଶଂସନୀୟ । ମହାତ୍ମାଗାନ୍ଧୀଙ୍କ ନିବେଦନ କ୍ରମେ ବିଶିଷ୍ଟ ସେବକ ଈଶ୍ୱରଲାଲ ବ୍ୟାସ ଆସି ରିଲିଫ କାମରେ ଲାଗି ପଡ଼ିଲେ, ମାରୱାଡ଼ି ରିଲିଫ ସୋସାଇଟି, ରାମକୃଷ୍ଣ ମିଶନ୍, ହିନ୍ଦ୍ ସେବକ ସଂଘ ଓ ଓଡ଼ିଶା ମାର୍ଚ୍ଚେଣ୍ଟସ୍ ରିଲିଫ ସୋସାଇଟି ଭଳି ବେସରକାରୀ ଓ ସ୍ୱେଚ୍ଛାସେବୀ ସଂଗଠନ ଗୁଡ଼ିକ ଦେବଦୂତ ଭଳି ରାଇବଣିଆ ଓ ଜଳେଶ୍ୱର ଅଞ୍ଚଳରେ ମାଗଣା ଭୋଜନ କେନ୍ଦ୍ର ପରିଚାଳନା ଓ ଅନାଥ ପିଲାଙ୍କ ଥଇଥାନ କାମରେ ଦିନରାତି

ଲାଗି ପଡ଼ିଲେ । ଲକ୍ଷ୍ମୀନାରାୟଣ ସାହୁ ଓ ନୀଳମଣି ରାଉତରାୟ ପ୍ରଭୃତି ରିଲିଫ କାମ ତଦାରଖ କରୁଥାନ୍ତି । ରାଇବଣିଆ ଅଞ୍ଚଳର ଭୟାବହତାର ଚିତ୍ର ଦେଇ ପୂର୍ବତନ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ ତାଙ୍କର ଆତ୍ମ ଜୀବନୀ 'ସ୍ମୃତି ଅନୁଭୂତି'ରେ ଲେଖିଛନ୍ତି ଯେ ମାତ୍ର ପନ୍ଦର ଦିନ ଭିତରେ କେବଳ ରାଇବଣିଆ ଅଞ୍ଚଳରେ ଖାଇବାକୁ ନ ପାଇ ତିନିଶହ ଲୋକମଲେ । ଏ ଖବର ସଂବାଦ ପତ୍ରରେ ପ୍ରକାଶିତ ହେବା-ପରେ ସମସ୍ତେ ପରିସ୍ଥିତିର ଗମ୍ଭୀରତା ହୃଦୟଙ୍ଗମ କରିପାରିଥିଲେ ।

ରାଇବଣିଆ ଓ ଜଳେଶ୍ୱର ଅଞ୍ଚଳର ଏହି ଦୁଃଖଦ ପରିସ୍ଥିତି ସ୍ୱଚକ୍ଷୁରେ ଦେଖି ପ୍ରତିକାର କରିବାପାଇଁ ଲକ୍ଷ୍ମୀନାରାୟଣ ସାହୁ ଓ ନୀଳମଣି ରାଉତରାୟ ଓଡ଼ିଶାର ପ୍ରଧାନ ମନ୍ତ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କ ନିକଟକୁ ଜରୁରୀ ନିବେଦନ ଭିତ୍ତିକ ବାର୍ତ୍ତା ପଠାଇଲେ । ସେତ ଆସିଲେ ନାହିଁ ବରଂ ଏକ ହାସ୍ୟାସ୍ପଦ ଉତ୍ତର ପଠାଇଲେ । ତତ୍କାଳୀନ ମାନ୍ଦ୍ରାଜ (ଏବର ଚେନ୍ନାଇ) ସହରଠାରେ ହେଉଥିବା ଘୋଡ଼ା ଦୌଡ଼ ପ୍ରତିଯୋଗିତାରେ ସେ ଗୋଟିଏ ଘୋଡ଼ା ପାଇଁ ବାଜି ଲଗାଇ ଥିବାରୁ ପ୍ରଥମେ ସେ ସେଠାକୁ ଯିବେ ଓ ସେଠାରୁ ଫେରି ଉତ୍ତର ବାଲେଶ୍ୱରକୁ ଆସିବେ ବୋଲି ଜଣାଇଲେ ।

ସେ ନିଜେ ଆଉ ଏ ଅଞ୍ଚଳକୁ କେବେ ବି ଆସିଲେ ନାହିଁ । ଏହାପରେ ଏସ: ଏଲ: ଏ ଗୁରୁଚନ୍ଦ୍ର ବାସୁ ଓ ଖାଦ୍ୟମନ୍ତ୍ରୀ ଗୋଦାବରୀଶ ମିଶ୍ର ଆସି ସବୁକଥା ଦେଖିଗଲେ । ଦୁର୍ଭିକ୍ଷର ପ୍ରତିକାର ପାଇଁ କିଛି ପଦକ୍ଷେପ ମଧ୍ୟ ନେଲେ । ସେତେବେଳକୁ ୧୯୪୨ ଅଗଷ୍ଟ ବିପ୍ଳବ ଯୋଗୁଁ ଜେଲ ଯାଇଥିବା ନେତା ଓ କର୍ମୀମାନେ ବିଭିନ୍ନ ସମୟରେ ଖଲାସ ହେଉଥାନ୍ତି । ସେମାନେ ପୂର୍ଣ୍ଣପ୍ରାଣରେ ଲୋକଙ୍କ ସେବାରେ ଲାଗିଗଲେ । ରାଇବଣିଆ ଅଞ୍ଚଳର କୁମ୍ଭିରଆ, ବରଡ଼ିହା ଓ

ପୁରୁଣାପାଣି ଗାଁ ମାନଙ୍କରେ ଜଳେଶ୍ବର ଅଞ୍ଚଳର ଆମ୍ବଡ଼ହା ଓ ଜଳେଶ୍ବର ଠାରେ ଅନ୍ନଛତ୍ର ମାନ ଖୋଲିଲା । ବାପା, ମା, ଆତ୍ମୀୟ ସ୍ବଜନ ମାନଙ୍କୁ ହରାଇ ଅନାଥ ହୋଇଥିବା ନିଃସ୍ବ ପିଲା ମାନଙ୍କୁ କୁମୁଡ଼ିଆ ଠାରେ ଅନାଥାଶ୍ରମ ଖୋଲି ଠକ୍କର ବାପା ଓ ଇଶ୍ବରଲାଲ ବ୍ୟାସ ଆଶ୍ରୟ ଦେଲେ । ସେମାନଙ୍କର ସେବା ଓ ମହାନୀୟତା ଭାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ । ଓଡ଼ିଶା ବାହାରେ ଜନ୍ମ ଗ୍ରହଣ କରିଥିଲେ ବି ଓଡ଼ିଶାର ଧନ, ଦରିଦ୍ର ଓ ମୁମୂର୍ଷୁ ମାନଙ୍କର ସେବାରେ ନିଜକୁ ସେମାନେ ଉତ୍ସର୍ଗ କରି ଦେଇଥିଲେ ।

କୁମୁଡ଼ିଆ ହାଟ ପଦାରେ ରହିବା ପାଇଁ ଝାଟି ମାଟିର ଘର ତିଆରି ହେଲା । ପିଲା ଓ ଅନ୍ୟାନ୍ୟ ଅନ୍ତେବାସୀମାନେ ଜପା ଓ ପନିପରିବା ଚାଷ କରୁଥିଲେ । ଆଶ୍ରମରେ ପାଠପଢ଼ା ସାଥିରେ ସୂତାକଟା ଓ ଲୁଗାବୁଣା ହେଉଥାଏ । ଗଯାଧର ଘଡ଼େଇ ନାମରେ ଜଣେ ବଙ୍ଗାଳୀ ଭଦ୍ରଲୋକ ସୂତାକଟା ଓ ଲୁଗାବୁଣା ଶିକ୍ଷା ଦେଉଥିଲେ । ଫତିଆବାଦର କର୍ମୀମାନେ ଯଥା କୃଷ୍ଣାରାମ ଦାସ ଓ ତାଙ୍କର ସ୍ତ୍ରୀ, ଜଗନ୍ନାଥ ଦାସ ଅଧିକାରୀ, ପଦ୍ମନାଭ କାନ୍ତ ଓ ସତ୍ୟେନ୍ଦ୍ର ନାଥ ଡଗର ପ୍ରଭୃତି ନିୟମିତ ଭାବରେ ସେଠାକୁ ଯାଇ ବିଭିନ୍ନ କାମରେ ସହାୟତା କରୁଥିଲେ ।

ପିଇବା ପାଣିର ସୁବିଧା ପାଇଁ କୂଅଟିଏ ଖୋଳାଗଲା । ଏଥିରେ ପାଣି କେବେ ହ ଶୁଖେ ନାହିଁ । ଯହିବା ଖରାଦିନେ ଅନ୍ୟାନ୍ୟ କୂଅ ଗୁଡ଼ିକ ଶୁଖି ଯାଉଥିଲା । ଆଶ୍ରମ ଓ ଅନ୍ନଛତ୍ରର କାମ ଠକ୍କର ବାପା ଓ ଈଶ୍ବର ଲାଲ ବ୍ୟାସଙ୍କ ଦ୍ଵାରା ପରିଚାଳିତ ହେଉଥିଲେ ।

ଭୂଦାନ ଆନ୍ଦୋଳନ ବେଳେ ସେ ଆଶ୍ରମ ବ୍ୟବହୃତ ହେଉଥିଲା । ପରେ ତାହା ପରିତ୍ୟକ୍ତ ହେଲା ଓ ଏବେ କେବଳ ଧ୍ୱଂସାବଶେଷ ମାତ୍ର ରହିଅଛି ।

ପରବର୍ତ୍ତୀ ପର୍ଯ୍ୟାୟରେ ସରକାର ତତ୍କାଳୀନ ଜଳେଶ୍ୱର ଥାନାକୁ ଦଶଟି ୟୁନିୟନରେ ବିଭକ୍ତ କଲେ । ପ୍ରତ୍ୟେକ ୟୁନିୟନରେ ଅବୈତନିକ ଭାବରେ ୨ ଜଣ ସଦସ୍ୟ ଓ ଜଣେ ପ୍ରେସିଡେଣ୍ଟ ରହୁଥିଲେ । ଜଣେ ବେତନ ଭୋଗୀ ସେକ୍ରେଟାରୀ ମଧ୍ୟ ଥିଲେ ସେମାନେ ଲୋକଙ୍କ ଅବସ୍ଥା ଦେଖି କଣ୍ଟ୍ରୋଲ ଦରରେ ଚିନି, କିରୋସିନ ଲୁଗା ଓ ସୂତା ଇତ୍ୟାଦି ଯୋଗାଇ ଦେଉଥିଲେ । ପଞ୍ଚିଆବାଦ ପ୍ରଗଣାକୁ ୫ଟି ୟୁନିୟନରେ ବିଭକ୍ତ କରାଯାଇଥିଲା ।

୧ ନମ୍ବର ୟୁନିୟନ

୧- ଲକ୍ଷ୍ମୀନାରାୟଣ ଦାସ (ରାଇବଣିଆ) ସଭାପତି
୨- ନିଲୋଚନ ଦାସ (କାଳିକ) ସଭ୍ୟ
୩- ବନମାଳୀ ପାତ୍ର (ଗୋପାଳପ୍ରସାଦ) ସଭ୍ୟ ।

୨ ନମ୍ବର ୟୁନିୟନ

୧- ଚିନ୍ତାମଣି ଦାସ (ଗୁରୁଦାସପୁର) ସଭାପତି
୨- କୃଷ୍ଣ ପ୍ରସାଦ ଦାସ (ଭଦୁଆ) ସଭ୍ୟ
୩- ଶ୍ୟାମ ସୁନ୍ଦର ରଣା (ଗୁରୁଦାସପୁର) ସଭ୍ୟ

୩ ନମ୍ବର ୟୁନିୟନ

୧- କୃଷ୍ଣ ପ୍ରସାଦ ଜେନା (ଚମାରଗାଁ) ସଭାପତି
୨- ଜଗନ୍ନାଥ ନାଥ୍ ଅଧିକାରୀ (ଝୀଳବଣି) ସଭ୍ୟ
୩- ଗଙ୍ଗାଧର ଗିରି (ଘୋଳାଇ) ସଭ୍ୟ

୬ ନମ୍ବର ୟୁନିୟନ

୧- ପଦ୍ମନାଭ କାନ୍ତ (କମାରଶୋଳ) ସଭାପତି

୨- ଜଗନ୍ନାଥ ଦାସ (କଙ୍କଡ଼ାଫେରୀ) ସଭ୍ୟ

୩- ବିଶ୍ୱନାଥ ସାମଲ (ଚନ୍ଦ୍ରପୁର) ସଭ୍ୟ

୪, ୫, ୬, ୮, ୯ ଓ ୧୦ ନମ୍ବର ୟୁନିୟନ ଗୁଡ଼ିକ ଜଳେଶ୍ୱର ଅଞ୍ଚଳର ଅନ୍ତର୍ଭୁକ୍ତ ଥିଲା ।

୧୯୪୨ ମସିହାର ଭାରତ ଛାଡ଼ ଆନ୍ଦୋଳନ ପରେ ଦେଶରେ ସ୍ୱାଧୀନତା ପାଇଁ ଆଉ କୌଣସି ଆନ୍ଦୋଳନ ହୋଇ ନଥିଲା । ପଞ୍ଚଆବାଦ ପ୍ରଗଣାର ସମସ୍ତ କର୍ମୀ ବାତ୍ୟା ଓ ଦୁର୍ଭିକ୍ଷରୁ ଉଦ୍ଭୂତ ପରିସ୍ଥିତିର ମୁକାବିଲା ଓ ରିଲିଫ କାମରେ ବ୍ୟସ୍ତ ରହିଲେ । ସେଆଡ଼େ ଆନ୍ତର୍ଜାତିକ ପରିସ୍ଥିତି ମଧ୍ୟ ବଦଳି ଯାଉଥାଏ । ଯୁଦ୍ଧପରେ ଇଂଲଣ୍ଡରେ ଟୋରି ଦଳ ବଦଳରେ ଲର୍ଡ ଅଟଲିଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଗଠିତ ଶ୍ରମିକ ଦଳର ସରକାର ଭାରତକୁ ସ୍ୱାଧୀନତା ଦେବାର ସମସ୍ତ ପ୍ରକାରର ପଦକ୍ଷେପ ନେଉଥାନ୍ତି ।

ମାତ୍ର ଅନେକ ଆଗରୁ କୂଟନୀତି ନିପୁଣ ଇଂରେଜମାନେ ଭାରତରେ ବସବାସ କରୁଥିବା ହିନ୍ଦୁ ଓ ମୁସଲମାନ ମାନଙ୍କ ଭିତରେ ସାମ୍ପ୍ରଦାୟିକ ଭେଦ ଭାବର ବୀଜ ବପନ କରି ସାରିଥିଲେ । ସମୟ କ୍ରମେ ତାହାର ଅଙ୍କୁରୋଦ୍‌ଗମ ହୋଇ ତାହା ଏକ ପୂର୍ଣ୍ଣ ବିଷ ବୃକ୍ଷରେ ପରିଣତ ହୋଇ ସାରିଥିଲା । ତେଣୁ ଧର୍ମ ଓ ସମ୍ପ୍ରଦାୟ ଭିତ୍ତିରେ ଅଖଣ୍ଡ ଭାରତ ବର୍ଷକୁ "ଭାରତ" ଓ "ପାକିସ୍ଥାନ" ଏହିଭଳି ଦୁଇଗୋଟି ରାଷ୍ଟ୍ରରେ ବିଭକ୍ତ କରାଯିବାର ସିଦ୍ଧାନ୍ତ ଇଂରେଜ ସରକାର ନେଲେ । ମହାତ୍ମାଗାନ୍ଧୀ ଏହାର ବିରୋଧ କଲେବି

ପରିସ୍ଥିତି ଦୃଷ୍ଟିରୁ କଂଗ୍ରେସ କାର୍ଯ୍ୟକାରୀ କମିଟି ଓ ମହମ୍ମଦ ଅଲ୍ଲି ଜିନ୍ନାଙ୍କ ନେତୃତ୍ୱରେ ମୁସଲିମଲୀଗ ଦଳ ଏହାକୁ ମାନିନେଲେ ।

ସମୟର ସ୍ରୋତ ବୋହି ଚାଲିଲା । ରାଇରଙ୍ଗିଆ ଓ ଜଗତସିଂହପୁର ଲୋକଙ୍କର ଭାଗ୍ୟାକାଶରେ ଉଦୟ ହୋଇଥିବା ବାତ୍ୟା ଓ ଦୁର୍ଭିକ୍ଷ ଭଳି ଦୁଷ୍ଟ ଧୂମକେତୁର ପ୍ରଭାବ ମଧ୍ୟ ଆସ୍ତେ ଆସ୍ତେ ଦୂରେଇ ଗଲା । କାଳରାତ୍ରି ପାହି ଆସୁଥାଏ । ପୂର୍ବାଶା କ୍ରମେ ରକ୍ତିମ ହୋଇ ଉଠୁଥାଏ । ସ୍ୱାଧୀନତାର ନବୀନ ଅରୁଣ ଉଦୟ ହେବାକୁ ଆଉ ବେଶୀ ଡେରି ନ ଥାଏ । ଲୋକେ ଆଗ୍ରହରେ ସେହି ଶୁଭ ମୁହୂର୍ତ୍ତକୁ ଅପେକ୍ଷା କରି ରହିଲେ ।



## ମୁକ୍ତିର ମହକ

ବହୁ ଲୁହ, ଲହୁ ଓ ତ୍ୟାଗର ବିନିମୟ ପରେ ଶେଷ ଅଭିଳଷିତ ସେ ସୁଦିନ ଆସି ପହଞ୍ଚିଲା । ୧୯୪୭ ଅଗଷ୍ଟ ୧୪ ତାରିଖ ମଧ୍ୟରାତ୍ରିରୁ ସମଗ୍ର ଭାରତ ବର୍ଷରେ ସ୍ୱାଧୀନତା ଉତ୍ସବ ପାଳନର ଢେଙ୍କ ଆରମ୍ଭ ହେଲା । ଠିକ୍ ରାତି ବାରଟାରେ ମୃଦଙ୍ଗ, କରତାଳ ତଥା ବିଭିନ୍ନ ବାଦ୍ୟ ଯନ୍ତ୍ରର ସୁମଧୁର ଐକତାନ ଏବଂ ଶଙ୍ଖଧ୍ୱନି ଓ ହୁଳହୁଳିରେ ସମଗ୍ର ରାଇରଙ୍ଗିଆ ଅଞ୍ଚଳ ଆନନ୍ଦରେ ବିଭୋର ହୋଇ ଉଠିଲା । ସାଧାରଣ ଲୋକେ ମଝିରେ ମଝିରେ 'ହରିବୋଲ', 'ହରିବୋଲ' ଉଚ୍ଚାରଣ କରୁଥାନ୍ତି । ବାଣ, ରୋଷଣିର ବିଭିନ୍ନ ବର୍ଣ୍ଣର ଆଲୋକମାଳାରେ ରାତିର ଆକାଶ ରଞ୍ଜିତ ହେଲା । ସୁବର୍ଣ୍ଣରେଖାର

ଉଦୟ ଖରରେ ଚୂଳଥିବା ଏ ମହୋତ୍ସବର ଛଟା ତାର ଜଳଭଣିରେ ପ୍ରତିବମ୍ବିତ ହେଉଥାଏ । ଭଟ ଦେଶରେ ଥିବା ଅସଂଖ୍ୟ ବୃକ୍ଷ ଗଛରୁ ଅଜସ୍ର ପୁଷ୍ପ ସମ୍ଭାର ତା ଦେହରେ ଅଜାଡି ହୋଇ ପଡୁଥାଏ । ସେ ତାର ସ୍ଫୀତ ବକ୍ଷରେ ଢେଉ ତୋଳି ମନର ଉଲ୍ଲାସରେ ତଳକୁ ତଳକୁ ବୋହି ଯାଉଥାଏ ।

ଆଃ ମୁକ୍ତିର ମହକ କେତେ ପ୍ରୀତିପ୍ରଦ ! କେତେ ଶହ ବର୍ଷ ପରେ ଭାରତବାସୀ ସ୍ୱାଧୀନତାର ଆନନ୍ଦ ଉପଭୋଗ କରିବାର ସୁଯୋଗ ଲଭ କଲେ···ଭବିଲେ ବର୍ତ୍ତିତ ହେବାକୁ ପଡ଼େ ।

ଗଭୀର ନିଶୀଥରେ ବାଣ ଏବଂ ବାଦ୍ୟର ପ୍ରଚଣ୍ଡ ଶବ୍ଦରେ ଘଇବଣିଆ ଅଞ୍ଚଳର ବୃକ୍ଷ ଶାଖାରେ ଏବଂ ଭଗ୍ନ ଦୁର୍ଗ ପ୍ରାଚୀରର ପ୍ରସ୍ତର ସନ୍ଧିରେ ବସା ବାନ୍ଧି ରହିଥିବା ପକ୍ଷୀମାନେ ଇତଃସ୍ତତଃ ଉଡ଼ିଗଲେ । ବଣ ବୁଦାରେ ବାସ କରୁଥିବା ପଶୁମାନେ ସମଗ୍ର ଗଡ଼ ଗାଇଜରେ ଘୂରିବୁଲି ଏ ମହାନ ମୁକ୍ତିର ବାର୍ତ୍ତା ପ୍ରଚାର କରିବାରେ ଲଗିଲେ । ଶହ ଶହ ବର୍ଷ ତଳେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଧୂଳିରେ ମିଶି ଯାଇଥିବା ପୂର୍ବ ପୁରୁଷମାନେ ଯେମିତି ଜୀବନ୍ୟାସ ପାଇ ଉଠିଲେ ! କାନଡେରି ଶୁଣିଲେ ଆଜ ଧ୍ୱନିର ଉଲ୍ଲାସରେ ପରିପୂର୍ଣ୍ଣ କୋଳାହଳକୁ । ତାହେଲେ କଚ୍ଛି କରି ଦେଖାଇ ଦେଲେ ସେମାନଙ୍କର ଉତ୍ତରାଧିକାରୀ ମାନେ । ସେମାନଙ୍କର ତ୍ୟାଗ ବ୍ୟର୍ଥ ହୋଇ ନାହିଁ ବୋଲି ସେମାନେ ଅନୁଭବ କଲେ ।

ଚମାରଗାଁ " କର୍ମୀ ତାଲିମ ଓ ସୂତାକଟା " କେନ୍ଦ୍ରରେ କୃଷ୍ଣ ପ୍ରସାଦ ଜେନା, ଚିନ୍ତାମଣି ଜେନା, ବିଲୋଚନ ଦାସ, ସୁରେଶ ଚନ୍ଦ୍ର ଦେ, ଉଦୟ ନାଥ ଜେନା, ଉଦୟ ନାଥ ଦତ୍ତ, ସୁରେନ୍ଦ୍ର ନାଥ ଜେନା, କ୍ଷେତ୍ରମୋହନ ଜେନା ତଥା ବିଲୋଚନ ପାତ୍ର ଓ

ଅନ୍ୟମାନେ ଏକତ୍ରିତ ହୋଇଥାନ୍ତି । "ଜୟ ଭାରତ ମାତାଙ୍କ ଜୟ" "ସ୍ୱାଧୀନ ଭାରତ କି ଜୟ", ମହାତ୍ମା ଗାନ୍ଧିଙ୍କ ଜୟ ", "ନେହେରୁ କି ଜୟ" ଓ "ହରେକୃଷ୍ଣ ମହତାବ କି ଜୟ" ଧ୍ୱନିରେ ଗଗନଭେଦୀ ନିରବଚ୍ଛିନ୍ନ ପ୍ରହର କମ୍ପି ଉଠିଲା । ଉପସ୍ଥିତ ଲୋକମାନେ ଭାବାବେଗରେ ପରସ୍ପରକୁ କୁଣ୍ଢାଇ ପକାଇଲେ । ଚକ୍ଷୁ ଯୁଗଳରୁ ଆନନ୍ଦର ଅଶ୍ରୁ ବୋହି ଯାଉଥାଏ । ସେହିଭଳି ବରଡ଼ିହାଗଡ଼ ଠାରେ ପଦ୍ମନାଭ କାନ୍ତ ଓ ଜଗନ୍ନାଥ ଦାସ ଅଧିକାରୀ; କଳମା ଠାରେ ଗୋବିନ୍ଦ ଚନ୍ଦ୍ର ପାଣ୍ଡୀ ଓ ପଦ୍ମନାଭ ବାରିକ; ସରିଡ଼ିହାର "ସତ୍ୟାଗ୍ରହୀ ଶିବିର" ଠାରେ ସତ୍ୟେନ୍ଦ୍ର ନାଥ ଡଗର ଓ ହାବାକର ଗିରି, ଗୁଣ୍ଡୁରିଶୋଳର ସଖାଲ ଚନ୍ଦ୍ର ସିଂ, ଭଣ୍ଡାର ପଲ୍ଲି ଗ୍ରାମରେ କଣାରାମ ଦାସ, ଖଣ୍ଟୁଆଡ଼ ଗ୍ରାମରେ ଫକୀର ମୋହନ ଦାସ, କଙ୍କଡ଼ାପେଟା ଠାରେ ଜଗନ୍ନାଥ ଦାସ, ପୁରୁଣାପାଣି ଗ୍ରାମରେ ଚିନ୍ତାମଣି ଜେନା, ଦକ୍ଷିଣ ପ୍ରହରାଜପୁରରେ କାର୍ତ୍ତିକ ଚନ୍ଦ୍ର ବେହେରା, ଭନ୍ତୁପୁର ଗ୍ରାମରେ ଗୋବିନ୍ଦ ଚନ୍ଦ୍ର ଗିରି, କୁମୁଡ଼ିଆ ଆଶ୍ରମର ଅନ୍ତେବାସୀମାନେ, ରାଇ-ବଣିଆ ଠାରେ ଲକ୍ଷ୍ମୀନାରାୟଣ ଗୋସ୍ୱାମୀ, ଫକୀର ଦାସ, ଶିଖର ପୁରର ମାଧବାନନ୍ଦ ଦାସ ଅଧିକାରୀ ଓ ଭଗବତ ଓଝା, ଗୃଫଲରେ ବିଦ୍ୟାଧର ଭୂୟାଁ, ପ୍ରସାଦଶୋଳଠାରେ ଗଙ୍ଗାଧର ଗିରି ପ୍ରଭୃତି ଭାରତର ପ୍ରଥମ ସ୍ୱାଧୀନତା ଦିବସ ମହା ଆଡ଼ମ୍ବର ସହକାରେ ପାଳନ କଲେ । ସେହିଭଳି ପ୍ରତ୍ୟେକ ଗ୍ରାମରେ ଥିବା ବିଦ୍ୟାଳୟ, ଯୁବକ ସଂଘ, ପାଠାଗାର ତଥା ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ଭାରତର ଜାତୀୟ ପତାକା ଉତ୍ତୋଳନ କରାଗଲା । ବିଭିନ୍ନ ଦେବାଳୟ ଓ ଉପାସନା ଗୃହ ମାନଙ୍କରେ କଷ୍ଟଲବ୍ଧ ସ୍ୱାଧୀନତାର ସ୍ଥାୟିତ୍ୱ ପାଇଁ ସ୍ୱତନ୍ତ୍ର ପୂଜାର୍ଚ୍ଚନା ଓ ପ୍ରାର୍ଥନାମାନ କରାଗଲା ।

ବିପୁଳ ଆନନ୍ଦ, ଉଲ୍ଲାସ ଓ ହର୍ଷଧ୍ୱନି ମଧ୍ୟରେ ରାତି ପାହିଗଲା । ଆସିଗଲା ୧୯୪୭ ମସିହା ଅଗଷ୍ଟ ୧୫ ତାରିଖର ପବିତ୍ର ପ୍ରଭାତ । ପ୍ରଥମ ସ୍ୱାଧୀନତା ଦିବସର ନବାରୁଣର କନକ କିରଣ ସମଗ୍ର ଭାରତବର୍ଷର ଗଛ ଲତା, ମାଟି ଗୋଡ଼ି, ପାହାଡ଼ ପର୍ବତ, ଜଳ ଓ ସ୍ଥଳଭାଗ ସ୍ପର୍ଶ କରିଗଲା । ପ୍ରତି ଗୃହସ୍ଥର ଦ୍ୱାର ଦେଶରେ ପୂର୍ଣ୍ଣ କଳସ ଶୋଭା ପାଉଥାଏ । ଉଚ୍ଚ ଆକାଶରେ ଫର ଫର ହୋଇ ଉଡ଼ୁଥାଏ ସ୍ୱାଧୀନ ଭାରତର ତିରଙ୍ଗା ପତାକା । ଚତୁର୍ଦ୍ଦିଗରେ ହର୍ଷ ଓ ଉଲ୍ଲାସର ପ୍ଲାବନ । ଦେଶବାସୀ ଏକ ସ୍ୱାଧୀନ ଦେଶର ନାଗରିକ ହେବାର ସୌଭାଗ୍ୟ ଲାଭକରି ନିଜକୁ ଗୌରବାନ୍ୱିତ ମନେ କରୁଥାନ୍ତି । ତହିଁ ସଙ୍ଗେ ସଙ୍ଗେ ଏକ ସୁଖୀ, ସମୃଦ୍ଧ, ଉଚ୍ଚ ନୀଚ ଜାତି-ଧର୍ମ-ବିଭେଦ-ବିହୀନ ଭାରତବର୍ଷ ଗଢ଼ି ତୋଳିବାର ବିଜୟ ଶପଥ ମଧ୍ୟ ନେଲେ । ଅତୀତର କାଳିମା ଅତୀତ ଗର୍ଭରେ ଲୀନ ହେଉ । ଆଗାମୀ ଦିନର ପ୍ରତିଟି ସକାଳ ନୂଆ ନୂଆ ସମ୍ଭାବନାରେ ପରିପୂର୍ଣ୍ଣ ହେଉ— ଏହାହିଁ ଥିଲା ପ୍ରତ୍ୟେକ ନାଗରିକଙ୍କର ଆନ୍ତରିକ ଇଚ୍ଛା । ସମଗ୍ର ଭାରତବର୍ଷର ଦଶ କୋଟି ସହିତ ନିଜକୁ ମିଶାଇ ଦେଇ ସାଇବଣିଆ ବାସୀ ମଧ୍ୟ ଏକ ଉନ୍ନତ ଭାରତବର୍ଷକୁ ଅପେକ୍ଷା କରି ରହିଲେ ।

□ □ □



ଶ୍ରୀ ତ୍ରିଲୋଚନ ଦାସ
ଚମାରଗାଁ



ଶ୍ରୀ ଗୋବିନ୍ଦ ପ୍ରସାଦ ଗିରି
ଭାନୁପୁର

ଶ୍ରୀ ଶିରିଷ କୁମାର ଦେ
ଚେଘରି



ଶ୍ରୀ ଫକୀର ମୋହନ ଦାସ
ରାଇବଣିଆ



ଜଗନ୍ନାଥ ଦାସ ଅଧିକାରୀ
ଶାଳବଣି



୪ ରାଖାଲ ଚନ୍ଦ୍ର ସିଂହ
ଗୁଣ୍ଡୁରିଶୋଳ

ତା ୫/୧୨/୧୯୯୦ରିଖ ତାଙ୍କ ମର ଶରୀର ଜାତୀୟ
ପତାକା ଦ୍ୱାରା ଆଚ୍ଛାଦିତ ଏବଂ ବକ୍ଷ ଦେଶରେ
ସ୍ୱାଧୀନତାର ରଜତ ଜୟନ୍ତୀରେ ପ୍ରାପ୍ତ ତାମ୍ର ଫଳକ

ଅନ୍ତିମ ଶଯ୍ୟାରେ

୰ ପଦ୍ମନାଭ ଦାସ, କମାରଶୋଳ



ଶ୍ରୀ କିଶାରାମ ଦାସ ଓ
ତାଙ୍କ ସ୍ତ୍ରୀ ଶାରଦାମଣି ଦାସ
ଭଣ୍ଡାରିପଲ୍ଲି



ଶ୍ରୀ ଜଗନ୍ନାଥ ଦାସ
କଙ୍କଡ଼ାଫେରା

# ପରିଚୟ

କୌଣସି ପ୍ରତିଦାନର ଆଶା ନ ରଖି ସ୍ୱାଧୀନତା ସଂଗ୍ରାମୀମାନେ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ, ଯୌବନ - ଜୀବନକୁ ଦେଶ ମାତୃକାର ମୁକ୍ତି ବେଦୀରେ ସମର୍ପଣ କରି ଦେଇଥିଲେ । ଫତିଆବାଦ ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନରେ ଲିପ୍ତ କେତେ ଜଣ ସଂଗ୍ରାମୀ ଓ ସମର୍ଥକଙ୍କର ସଂକ୍ଷିପ୍ତ ପରିଚୟ ନିମ୍ନରେ ପ୍ରଦାନ କରାଗଲା । ଅନ୍ୟ ମାନଙ୍କର ପରିଚୟ ଅନେକ ଚେଷ୍ଟା କରି ମଧ୍ୟ ସଂଗ୍ରହ କରାଯାଇ ପାରି ନାହିଁ ।

ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ ଥିଲେ ଏ ଅଞ୍ଚଳରେ କଂଗ୍ରେସର କର୍ଣ୍ଣଧାର । ଓଡ଼ିଶାରେ ସେ କିମ୍ବଦନ୍ତୀ ପୁରୁଷରେ ପରିଣତ ହୋଇ ସାରିଛନ୍ତି । ତାଙ୍କର ପରିଚୟ ଏ କ୍ଷୁଦ୍ର ପରିସରରେ ଦେବା ସମ୍ଭବ ନୁହେଁ ।

ଆବିର୍ଭାବ — ୧୮୯୯ ମସିହା ନଭେମ୍ବର ୨୧ ତାରିଖ
ତିରୋଧାନ — ୧୯୮୭ ମସିହା ଜାନୁୟାରୀ ୨ ତାରିଖ

ଅବିଭକ୍ତ ଜଳେଶ୍ୱର ଥାନାର ଅଧିବାସୀ ନହୋଇ ମଧ୍ୟ ବାଲେଶ୍ୱର ଜିଲା କଂଗ୍ରେସ କମିଟି ଦ୍ୱାରା ପ୍ରେରିତ ହୋଇ କରୁଣାକର ପାଣିଗ୍ରାହୀ ଓ ବିଶ୍ୱନାଥ ହୋତା ଏ ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନ ଓ କଂଗ୍ରେସ ସଂଗଠନର ମୂଳଦୁଆକୁ ସୁଦୃଢ଼ କରି ପାରିଥିଲେ । ତେଣୁ ସେମାନଙ୍କର ସଂକ୍ଷିପ୍ତ ପରିଚୟ ଦେବା ଆବଶ୍ୟକ ମନେ କଲି ।

## କରୁଣାକର ପାଣିଗ୍ରାହୀ

ଜନ୍ମ — ସନ ୧୩୦୯ ସାଲ ଫାଲଗୁନ ମାସ ୨୩ ଦିନ (ଅମାବସ୍ୟା)
ମୃତ୍ୟୁ — ୪ । ୩ । ୧୯୭୧

ସେ ଏକ ଅବସ୍ଥାପନ୍ନ ସ୍ୱଚ୍ଛଳ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ବାପାଙ୍କ ନାମ ବ୍ରଜମୋହନ ପାଣିଗ୍ରାହୀ ।

ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ କଲେଜ ଶିକ୍ଷା ତ୍ୟାଗ କରି ୧୯୨୧ ମସିହାରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ । କଂଗ୍ରେସର ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ପୋଲିସର ନାନା ପ୍ରକାରର ନିର୍ଯ୍ୟାତନା ସହ୍ୟ କରିଛନ୍ତି ଓ ବାରମ୍ବାର କାରାବରଣ କରିଛନ୍ତି । ଜଳେଶ୍ୱର ଥାନାରେ କଂଗ୍ରେସ ସଂଗଠନର

ଦାୟିତ୍ୱରେ ରହିଥିଲେ । ସ୍ୱାଧୀନତା ପରେ ପ୍ରଥମ ସାଧାରଣ ନିର୍ବାଚନରେ ସେ ଜଳେଶ୍ୱର ନିର୍ବାଚନ ମଣ୍ଡଳୀରୁ ବିଧାୟକ ଭାବରେ ରାଜ୍ୟ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ।

ସେ ବାଲେଶ୍ୱର ଜିଲାର ଉନ୍ନତି ପାଇଁ ଓ ଲୋକଙ୍କ ସେବାରେ ପ୍ରାୟ ପଚିଶ ବର୍ଷ କାଳ ନିଜକୁ ଅର୍ପଣ କରି ଦେଇଥିଲେ ।

## ବିଶ୍ୱନାଥ ହୋତା

ବାଲେଶ୍ୱର ଜିଲା ସ୍କୁଲରେ ପଢ଼ୁଥିବା ବେଳେ ୧୯୨୧ ମସିହା ଏପ୍ରିଲ ୭ତାରିଖରେ ପାଠପଢ଼ା ଛାଡ଼ିଦେଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଲେ । ଜଳେଶ୍ୱରରେ କଂଗ୍ରେସର ସାଂଗଠନିକ କାର୍ଯ୍ୟରେ କରୁଣାକର ପାଣିଗ୍ରାହୀଙ୍କୁ ସହଯୋଗ କରିବା ପାଇଁ ଜିଲା କଂଗ୍ରେସ କମିଟି ତାଙ୍କୁ ଦାୟିତ୍ୱ ଦେଇଥିଲେ ।

ବାଲେଶ୍ୱରରୁ "ପ୍ରଜାତନ୍ତ୍ର" ସାପ୍ତାହିକୀ ଆକାରରେ ପ୍ରକାଶ ପାଇବା ସମୟରେ ଅନ୍ୟ ମାନଙ୍କ ସହିତ ଶ୍ରୀ ହୋତା ମଧ୍ୟ ଏହାର ପରିଚାଳନାରେ ଅଂଶ ଗ୍ରହଣ କରି ନିଜ ଦକ୍ଷତାର ପରିଚୟ ଦେଇଥିଲେ ।

ଲବଣ ସତ୍ୟାଗ୍ରହ ପାଇଁ ଇଞ୍ଚୁଡ଼ି ଠାରେ କ୍ଷେତ୍ର ପ୍ରସ୍ତୁତ କରିବାରେ ଲାଗିଥିଲେ ଏବଂ ଲବଣ ସତ୍ୟାଗ୍ରହରେ ଅଂଶ ଗ୍ରହଣ କରି ଜେଲଦଣ୍ଡ ଭୋଗିଥିଲେ । ଜେଲରୁ ଆସିବା ପରେ ଆକସ୍ମିକ ଭାବରେ କଲେରାରେ ତାଙ୍କର ପରଲୋକ ହୋଇଗଲା ।

## କୃଷ୍ଣ ପ୍ରସାଦ ଜେନା

ସା/ଡାକ :- ଚମାରଗାଁ, ଜିଲା :- ବାଲେଶ୍ୱର, ଜନ୍ମ ଓ ମୃତ୍ୟୁ ତାରିଖ ଜଣା ନାହିଁ । ସେ ସ୍ୱାଧୀନତା ଲାଭର ଅଳ୍ପ କେତେ ବର୍ଷ ଭିତରେ ମୃତ୍ୟୁ ବରଣ କରିଥିଲେ ।

ପିତା - ନୀଳାମ୍ବର, ମାତା - ଯଶୋଦା ଦେବୀ

## ସତ୍ୟେନ୍ଦ୍ର ନାଥ ଡଗର

ସା :- ସରଡହା, ଡାକଘର :- ଅଶାବନ୍ଧ, ଜିଲା :- ବାଲେଶ୍ୱର ପିତାଙ୍କ ନାମ ଦାମୋଦର । ଜନ୍ମ (ଜଣାନାହିଁ) ମୃତ୍ୟୁ - ୭. ୧୨. ୭୨

ସ୍ୱାଧୀନତା ପରେ ବିଭିନ୍ନ ଗଠନ ମୂଳକ କାମରେ ନିଜକୁ ନିୟୋଜିତ କରିଥିଲେ ।

## ପଦ୍ମନାଭ କାସ୍ତ

ସା :- କମାରଗୋଳ, ଡାକଘର - ବରଡିହା, ବାଲେଶ୍ୱର, ପିତା- ଚାନ୍ଦ ପ୍ରସାଦ, ଜନ୍ମ- ୧୩୧୪ ସାଲ ଚୈତ୍ର ମାସ, ମୃତ୍ୟୁ- ୫.୧୨. ୧୯୯୦ । ସ୍ୱାଧୀନତା ପରେ ବିଭିନ୍ନ ଉନ୍ନୟନ ମୂଳକ କାମରେ ଲିପ୍ତ ଥିଲେ । ତାଙ୍କୁ ସ୍ୱାଧୀନତାର ରଜତ ଜୟନ୍ତୀ ସମାରୋହରେ ତାମ୍ର ଫଳକ ପ୍ରଦାନ କରା ଯାଇଥିଲା ।

## ଜଗନ୍ନାଥ ଦାସ ଅଧିକାରୀ

ସା:- ଶାଳବଣି ପୋ:- ବରଡିହା, ବାଲେଶ୍ୱର, ପିତା- ଶତ୍ରୁଘ୍ନ ମାତା- ସୁଭଦ୍ରା ଜନ୍ମ ୫. ୭. ୧୯୦୩ ମୃତ୍ୟୁ- ୨୪. ୮. ୨୯୮୧ ।

ସ୍ୱାଧୀନତା ପରେ ପଞ୍ଚାୟତ ସଙ୍ଗଠନ ଓ ଗଠନ ମୂଳକ କାମରେ ସଂପୃକ୍ତ ଥିଲେ । ତାଙ୍କୁ ସ୍ୱାଧୀନତାର ରଜତ ଜୟନ୍ତୀ ବର୍ଷରେ (୧୯୭୨) ତାମ୍ର ଫଳକ ପ୍ରଦାନ କରାଯାଇଥିଲା ।

## କାଶୀରାମ ଦାସ

ସା:ପୋ:-ଭଣ୍ଡାରିପଟି, ଜିଲ୍ଲା- ବାଲେଶ୍ୱର

ଜନ୍ମ- (ଜଣାନାହିଁ) ମୃତ୍ୟୁ- ୭. ୭. ୧୯୯୩

ପିତା- ଭଗବତ । ୧୯୭୨ରେ ତାମ୍ର ଫଳକ ପାଇଥିଲେ । ତାଙ୍କର ସ୍ତ୍ରୀ ସାରଦାମଣି ଦେବୀ ଏବେ ସଂଗ୍ରାମୀ ଭତ୍ତା ପାଉଛନ୍ତି ।

## ଗୋବିନ୍ଦ ଚନ୍ଦ୍ର ପାଠୀ

ସା:/ପୋ:- କଳମା, ଜିଲ୍ଲା- ବାଲେଶ୍ୱର, ଜନ୍ମ- ୧୯୦୫ ମସିହା ମୃତ୍ୟୁ-୧୬. ୮. ୧୯୮୫ ପିତା-ଲକ୍ଷ୍ମୀ ନାରାୟଣ, ମାତା- ଦୁର୍ଗାମଣି ।

## ପଦ୍ମନାଭ ବାରିକ

ସା:ପୋ:- କଳମା, ଜିଲ୍ଲା- ବାଲେଶ୍ୱର

ପିତା- କୃଷ୍ଣଚନ୍ଦ୍ର ମାତା-ମାଣିକ

## ସରସ୍ୱତୀ ବାରିକ

ସା:/ପୋ:-କଳମା, ବାଲେଶ୍ୱର, ସ୍ୱାମୀ-ପଦ୍ମନାଭ ବାରିକ

## ରାଖାଲ ଚନ୍ଦ୍ର ସିଂହ

ସା:-ଗୁଣ୍ଡରଶୋଳ, ପୋ:-କଳମା, ବାଲେଶ୍ୱର

ପିତା-ଜନକ, ମାତା-ଭୁଲିଆ, ଜନ୍ମ ଜଣାନାହିଁ- ମୃତ୍ୟୁ-୨୪. ୫. ୧୯୯୫

ସ୍ୱାଧୀନତା ପରେ ପ୍ରାଥମିକ ଶିକ୍ଷକ ହିସାବରେ କାର୍ଯ୍ୟ କରୁଥିଲେ । ସ୍ୱାଧୀନତାର ରଜତ ଜୟନ୍ତୀ ବର୍ଷରେ ତାମ୍ର ଫଳକ ଦ୍ୱାରା ସମ୍ମାନିତ ।

## ଦିବାକର ଗିରି

ସା:- ସରଭଦ୍ରା, ପୋଷ୍ଟ- ଅଣାବନ୍ଧ, ବାଲେଶ୍ୱର

ପିତା-ସଦାନନ୍ଦ, ମାତା-ଫୁଲମଣି, ସ୍ତ୍ରୀ-ଗେହ୍ଲାମଣି

ଜନ୍ମ ୧୮୯୭ ମସିହା, ମୃତ୍ୟୁ- ୨୪. ୧୦. ୧୯୮୪

## ବିଦ୍ୟାଧର ଭୂୟାଁ

ସା:-ଗୁଫଲ, ପୋଷ୍ଟ-କନକାଇ, ଜିଲ୍ଲା-ବାଲେଶ୍ୱର

ପିତା-ଉପେନ୍ଦ୍ର, ଜନ୍ମ-୧୯୧୪ ମସିହା, ମୃତ୍ୟୁ- ୨୪. ୮. ୯୪

## ଶିରିଶ କୁମାର ଦେ

ସା: ତେଢଣ, ପୋଷ୍ଟ- ଚମାରଗାଁ, ବାଲେଶ୍ୱର

ପିତା-ଯଦୁନାଥ, ମାତା ହେମାଙ୍ଗିନୀ, ଜନ୍ମ ୨୦. ୮. ୧୯୧୯, ଜୀବିତ ଅଛନ୍ତି

## ଗୋବିନ୍ଦ ପ୍ରସାଦ ଗିରି

ସା : କାନୁପୁର, ଡାକ : ଶିଖରପୁର, ଜିଲ୍ଲା : ବାଲେଶ୍ୱର

ପିତା-ଭୋଳାନାଥ ମାତା-ସ୍ନେହମଣି, ଜନ୍ମ ୧୧. ୫. ୧୯୧୯

ସେ ବର୍ତ୍ତମାନ ଜୀବିତ ଅଛନ୍ତି । ମାତ୍ର ଚଳତ୍ ଶକ୍ତି ରହିତ

## ଅବିନାଶ ଚନ୍ଦ୍ର ବେହେରା

ସା/ଡାକ : ମଥୁରାନାଥ, ଜିଲ୍ଲା : ବାଲେଶ୍ୱର

ଜନ୍ମ-୭. ୮. ୧୯୧୭, ମୃତ୍ୟୁ - ୧୯୮୭ ମସିହା

## ଜଗନ୍ନାଥ ଦାସ

ସା : କଙ୍କଡ଼ାଫେର ପୋ : ଖଆଡ଼ି, ବାଲେଶ୍ୱର, ପିତା-ସନ୍ୟାସୀ

ମାଆ-ଅମ୍ବିକା, ଜନ୍ମ ୧୮୯୯ ମସିହା, ମୃତ୍ୟୁ ୧୯୮୨ କାର୍ତ୍ତିକ ୨୯ଦିନ

୧୯୨୧ ଅସହଯୋଗ ଆନ୍ଦୋଳନ, ୧୯୩୦ରେ ଲବଣ ସତ୍ୟାଗ୍ରହ ଓ ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ଭାଗ ନେଇଥିଲେ ।

ମାତ୍ର ଗିରଫ ହୋଇ ଥିଲେ ବା ଦଣ୍ଡିତ ହୋଇ ନଥିଲେ । ମୟୂରଭଞ୍ଜ ପ୍ରଜା ଆନ୍ଦୋଳନରେ ମଧ୍ୟ ଅଂଶ ଗ୍ରହଣ କରିଥିଲେ ।

## ଗଙ୍ଗାଧର ଗିରି

ସା:- ପ୍ରସାଦଗୋଳ, ଡାକ- ଅଣ୍ଡାବନ୍ଧ, ବାଲେଶ୍ୱର

ପିତା- କ୍ଷେତ୍ରମୋହନ, ଜନ୍ମ- ୧୮୯୮ ମସିହା

ମାତା- ମଣ୍ଡଦାସୀ, ମୃତ୍ୟୁ- ୧୪ । ୬ । ୧୯୫୪

## କୈଳାସ ଚନ୍ଦ୍ର ସିଂହ

ସା:- ନମଣ୍ଡହା, ଡାକ- ବରଣ୍ଡହା, ଜିଲ୍ଲା- ବାଲେଶ୍ୱର

ପିତା- ହଗୁଣ, ମାତା- ପାବଣ

ତାଙ୍କର ଜନ୍ମ ଓ ମୃତ୍ୟୁ ତାରିଖ ଜଣା ନାହିଁ । ସ୍ୱାଧୀନତା ପରେ ଦୁଃଖ ଓ ଦୈନ୍ୟରେ କାଳାତିପାତ କରୁଥିଲେ । ପରେ ପାଗଳ ଅବସ୍ଥାରେ ତାଙ୍କର ମୃତ୍ୟୁ ହେଲା । ତାଙ୍କ ସ୍ତ୍ରୀ ବର୍ତ୍ତମାନ ଜୀବିତ ଅଛନ୍ତି ।

## ଫକୀର ମୋହନ ଦାସ

ସା: / ଡାକ- ଗଇବଣିଆ, ବାଲେଶ୍ୱର

ପିତା- ବ୍ରଜମୋହନ, ଜନ୍ମ ତାରିଖ- ଜଣାନାହିଁ

ମୃତ୍ୟୁ- ୨୨ । ୯ । ୧୯୯୬ । ତାଙ୍କର ସ୍ତ୍ରୀ ଚନ୍ଦ୍ରମଣି ଦେବୀ ଏବେ ଜୀବିତ ।

## କୁଆଁରିଆ ସାନ୍ତାଲ

ସା:- ଲୁହାପଙ୍କା, ଡାକ- ଖୁଣ୍ଟଆଡ଼ା, ବାଲେଶ୍ୱର

ତାଙ୍କର ଜନ୍ମ ଓ ମୃତ୍ୟୁ ତାରିଖ ଜଣାନାହିଁ । ପିତା- ଦେ.କାଣ୍ଡଆ

## ତ୍ରିଲୋଚନ ଦାସ

ପିତା- ନରହରି, ମାତା- ଚୁନ୍ଦମଣି

ସା: /ଡାକ- ଚମାରଗାଁ, ଜିଲ୍ଲା- ବାଲେଶ୍ବର, ଜନ୍ମ- ୧୯୦୦ ମସିହା ଜ୍ୟେଷ୍ଠ ମାସ । ମୃତ୍ୟୁ- ୧୯୭୨ ମସିହା ଜୁଲାଇ ୯ ତାରିଖ ରବିବାର । ସ୍ବାଧୀନତା ପରେ ଚମାରଗାଁ ଗ୍ରା: ପ: ରେ ପ୍ରଥମ ସରପଞ୍ଚ ଥିଲେ ।

## ଦେବେନ୍ଦ୍ର ମହାନ୍ତି

ସା- ସରଡିହା, ଡାକ- ଅଣାବନ୍ଧ, ବାଲେଶ୍ବର

ଜନ୍ମ- ୧୭ । ୧୧ । ୧୯୨୨, ଜୀବିତ ଅଛନ୍ତି । ପି:- ମଧୁସୂଦନ ମହାନ୍ତି ।

ଭାରତ ଛାଡ଼ ଆନ୍ଦୋଳନ ସମୟରେ ପ୍ରାଥମିକ ଶିକ୍ଷକତା କରୁଥିଲେ ମଧ୍ୟ ଗୁପ୍ତରେ ସଂଗ୍ରାମୀମାନଙ୍କର ଡ଼ାକ ନେବା ଆଣିବା କରୁଥିଲେ ।

## ଗୋପୀନାଥ ଡଗର

ସା- ଶାଳବଣି, ଡାକ- ବରଡିହା, ଜିଲ୍ଲା- ବାଲେଶ୍ବର

ଜନ୍ମ ଓ ମୃତ୍ୟୁ ତାରିଖ ମିଳିନାହିଁ । ସେ ୭୬ ବର୍ଷ ବୟସରେ ପ୍ରାଣତ୍ୟାଗ କରିଥିଲେ । ୧୯୪୨ ଭାରତ ଛାଡ଼ ଆନ୍ଦୋଳନ ବେଳେ ସଂଗ୍ରାମୀ ଗୌରଚନ୍ଦ୍ର ଦାସଙ୍କୁ ନିଜ ଘରେ ଗୋପନରେ ଆଶ୍ରୟ ଦେଇଥିଲେ ।

## ସୁରେଶ ଚନ୍ଦ୍ର ଦେ

ସା: / ଡାକ- ଚମାରଗାଁ, ଜିଲ୍ଲା- ବାଲେଶ୍ବର

ଜନ୍ମ ୧୮୯୭ ମସିହା, ମୃତ୍ୟୁ ୧୮ । ୧୦ । ୧୯୯୫

ପିତା- ରଘୁନାଥ, ମାତା- ଆହ୍ଲାଦମଣି

ସେ ସ୍ବାଧୀନତା ଆନ୍ଦୋଳନ ପ୍ରତି ସହାନୁଭୂତିଶୀଳ ଥିଲେ ଓ ବିଭିନ୍ନ ଉପାୟରେ ସଂଗ୍ରାମୀମାନଙ୍କୁ ସାହାଯ୍ୟ କରୁଥିଲେ ।

## କାର୍ତ୍ତିକ ଚନ୍ଦ୍ର ବେହେରା

ସା:- ଦକ୍ଷିଣପ୍ରହଲ୍ଲାଦପୁର, ଡାକ- ମାଳପାଳ

ପିତା- ହଗୁଣ, ମାତା - ହାଡ଼ମଣି । ଜନ୍ମ- ୨ । ୩ । ୧୮୯୮, ମୃତ୍ୟୁ- ୧୪ । ୪ । ୧୯୭୦ । ସ୍ୱାଧୀନତା ଆନ୍ଦୋଳନର ବିଭିନ୍ନ ପର୍ଯ୍ୟାୟରେ ନିଜେ ଅଂଶ ଗ୍ରହଣ କରିଥିଲେ ଓ ବିଭିନ୍ନ ଗାଁର ଯୁବକମାନଙ୍କୁ ବିଦେଶୀ ଜିନିଷ ବର୍ଜନ ଓ ସ୍ୱଦେଶୀ ଜିନିଷର ବ୍ୟବହାର ପାଇଁ ବୁଝାଉ ଥିଲେ । ବିଭିନ୍ନ ସମୟରେ ସଂଗ୍ରାମୀମାନେ ତାଙ୍କ ଘରେ ଆଶ୍ରୟ ନେଉଥିଲେ । ସେଥି ପାଇଁ ଅନେକ ଥର ସେ ପୋଲିସ ନିର୍ଯ୍ୟାତନାର ଶୀକାର ହୋଇଛନ୍ତି ।

## ଲକ୍ଷ୍ମୀ ନାରାୟଣ

ସା: /ଡାକ- ରଙ୍ଗବଣିଆ, ଜିଲ୍ଲା- ବାଲେଶ୍ୱର

## ଫଣୀଭୂଷଣ ଦାସ

ସା: / ଡାକ- ଲକ୍ଷ୍ମଣନାଥ, ଜିଲ୍ଲା- ବାଲେଶ୍ୱର

ଚମାରଗାଁ କର୍ମୀତାଲିମ କେନ୍ଦ୍ରରେ ତାଲିମ ପ୍ରାପ୍ତ । ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେଇ ଜେଲ ବରଣ କରିଥିଲେ ।

* ସଂଗ୍ରାମୀମାନଙ୍କର ସମ୍ପର୍କରେ ଅଧିକ ତଥ୍ୟ କୌଣସି ସୂତ୍ରରୁ ପ୍ରାପ୍ତ ହେଲେ, ଆଗାମୀ ସଂସ୍କରଣରେ ସେ ସବୁର ଉଲ୍ଲେଖ କରାଯିବ ।



# ସହାୟକ ଗ୍ରନ୍ଥ


୧ । ସାଧନାର ପଥେ— ଡଃ ହରେକୃଷ୍ଣ ମହତାବ
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର- ୧୯୭୨

୨ । ସ୍ମୃତି ଓ ଅନୁଭୂତି — ମାଳମଣି ରାଉତରାୟ
ଗ୍ରନ୍ଥ ମନ୍ଦିର, ବିନୋଦ ବିହାରୀ, କଟକ- ୨, ୧୯୮୬

୩ । ରାଇବଣିଆ ଓ ଜଳେଶ୍ୱର ଥାନାର ସ୍ୱାଧୀନତା ସଂଗ୍ରାମର ଇତିହାସ—ପଦ୍ମନାଭ କାନ୍ତ
ଆନନ୍ଦ ଲୋକ, ଚଥରପୁର, ଜଳେଶ୍ୱର, ୧୯୮୬

୪ । ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନ--
ସୁରେନ୍ଦ୍ର ନାଥ ପଟ୍ଟନାୟକ
ଗ୍ରନ୍ଥ ମନ୍ଦିର, କଟକ-୨, ୧୯୭୨

୫ । ଅମୃତ ସ୍ୱାକ୍ଷର—ଦୁର୍ଗା ଦାସ
ତଲୁଣ୍ଡ, କଖଡ଼ା, ବାଲେଶ୍ୱର, ୧୯୮୭


*



## ଲେଖକ - ଡଃ ଶ୍ରୀକାନ୍ତ ଚରଣ ପାତ୍ର

ପିତା : ୰ ତ୍ରିଲୋଚନ ମାତା : ୰ ଲୋଟଣି
ସା :/ ଡାକଘର - ଚମାରଗାଁ, ଜିଲ୍ଲା - ବାଲେଶ୍ୱର - ୭୫୬ ୦୩୨
ଜନ୍ମ - ୧୯ - ୫ - ୧୯୪୩

୧୯୬୬ ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ସ୍ନାତକୋତ୍ତର ଉପାଧି ହାସଲ । ''ଗ୍ରାମୀଣ ବିକାଶରେ ଅଗ୍ରଣୀ ବ୍ୟାଙ୍କର ଭୂମିକା'' ଶୀର୍ଷକ ଗବେଷଣାମୂଳକ ନିବନ୍ଧ ଲେଖି ସମ୍ବଲପୁର ବିଶ୍ୱବିଦ୍ୟାୟରୁ ୧୯୯୪ରେ ପି.ଏଚ୍.ଡି. ଉପାଧି ପ୍ରାପ୍ତ । ୧୯୬୭ରୁ ୧୯୭୦ ମସିହା ଯାଏ ଚମାରଗାଁ ଗ୍ରାମ ପଞ୍ଚାୟତର ସରପଞ୍ଚ । ୧୯୭୧ ଅଗଷ୍ଟ ମାସରୁ ଅଦ୍ୟାବଧି ଅର୍ଥନୀତିରେ ଅଧ୍ୟାପକ ହିସାବରେ କର୍ତ୍ତବ୍ୟରତ ।

ବହୁ କବିତା ଓ ଗଳ୍ପ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ''ଜଗତେ ମୁହିଁ ଧନ୍ୟ'' ନାମକ ଏକ ଶିଶୁ କିଶୋର କବିତା ସଂକଳନ ଏବେ ପ୍ରକାଶ ଅପେକ୍ଷାରେ । ଜଳେଶ୍ୱରର ''ଦୀନକୃଷ୍ଣ ସ୍ମୃତି ପରିଷଦ'' ଓ ''ବାପୁ ସ୍ମାରକ ନିକେତନ''ର ସଭାପତି ତଥା '' ଜଳେଶ୍ୱରର ସାହିତ୍ୟ ସଂସ୍କୃତି ସଂସଦ'', ଓ ''ସୁବର୍ଣ୍ଣା ସାହିତ୍ୟ ସଂସ୍କୃତି ପରିଷଦ''; ଉତ୍ତରକୂଳହାଟ, ଯାଜପୁରର ''ପ୍ରଚେତା ସାହିତ୍ୟ ଓ ସଂସ୍କୃତି ପରିଷଦ ଏବଂ ବାଲେଶ୍ୱରର '' ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମେଳନ''ର ଆଜୀବନର ସଦସ୍ୟ । ବିଭିନ୍ନ ଉଚ୍ଚ ବିଦ୍ୟାଳୟ ଓ ମହାବିଦ୍ୟାଳୟ ପ୍ରତିଷ୍ଠାରେ ସକ୍ରିୟ ସହାୟତା ଓ ସହଯୋଗ ।

୧୯୯୫ ମସିହାରେ ପାରାଦ୍ୱୀପର ''ମନସ୍ୱିନୀ'' ସାହିତ୍ୟ ସଂସ୍ଥା ଦ୍ୱାରା ସମ୍ବର୍ଦ୍ଧିତ ।

ଅଧୁନା ''ରାଜବଣିଆର ଐତିହ୍ୟ'' ସଂପର୍କରେ ଗବେଷଣା ରତ ।